# ସାହିତ୍ୟ-ସଂଗ୍ରହ

( ପ୍ରଥମ ଭାଗ )



ଷ୍ଟୁଡେଣ୍ଟସ୍ ଷ୍ଟୋର୍-କଟକ

# ପାଠ-ସଂଗ୍ରହ

ଏହି ପାଠ୍ୟ ପୁସ୍ତକ ଗୁଡ଼ିକ ଓଡ଼ିଶାର ସିଲାବସ୍ ଅନୁଯାୟୀ ଦ୍ୱିତୀୟ ଶ୍ରେଣୀଠାରୁ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଚାରି ଭାଗରେ ଶୀଘ୍ର ବାହାରିବ । ଏହାର ସମସ୍ତ ଗଳ୍ପ, ପ୍ରବନ୍ଧ, ଓ କବିତାମାନ ଶ୍ରେଣୀ ଉପଯୋଗୀ ହୋଇଅଛି । ଭାଷା ଅତି ସରଳ, ପ୍ରାଞ୍ଜଳ । ଓଡ଼ିଶାର ପ୍ରସିଦ୍ଧ ପ୍ରସିଦ୍ଧ ଲେଖକମାନଙ୍କଦ୍ୱାରା ଲିଖିତ ।

# ସଚିତ୍ର ଓଡ଼ିଆ ପାଠ

## ପ୍ରଥମଭାଗ

### ( ଶିଶୁଶ୍ରେଣୀ ନିମିତ୍ତ )

ବ୍ରହ୍ମପୁର ସରକାରୀ ଟ୍ରେନିଂ ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ ବୈଦ୍ୟନାଥ ରଥ B A.L.T. ଙ୍କ ପ୍ରଣୀତ । ଏହା ଓଡ଼ିଶାର ସିଲାବସ୍ ଅନୁଯାୟୀ ଲିଖିତ । ଛପା ଅତି ସୁନ୍ଦର ଓ ବଡ଼ ଅକ୍ଷରରେ ମୁଦ୍ରିତ । ବହୁତ ଚିତ୍ରରେ ପୁସ୍ତକଟି ଅତି ସୁନ୍ଦର ହୋଇଛି । ଏଥିରେ ସୁକୁମାରମତି ଶିଶୁମାନଙ୍କୁ ଚିତ୍ର ଓ ପଦାର୍ଥ ସାହାଯ୍ୟରେ ବର୍ଣ୍ଣଶିକ୍ଷା ଦିଆଯାଇଅଛି ।

## ଦ୍ୱିତୀୟଭାଗ

### ( ପ୍ରଥମ ଶ୍ରେଣୀପାଇଁ )

ଓଡ଼ିଶାର ସିଲାବସ୍ ଅନୁଯାୟୀ ଲିଖିତ । ଶିଶୁମାନେ ସହଜରେ ପଢ଼ି ପାରିବା ଭଳି ସରଳ, ସରସ, କୌତୁକାବହ ବିଷୟମାନ ଦିଆଯାଇଅଛି । ଛପା ପରିଷ୍କାର ପରିଚ୍ଛନ୍ନ । ଅକ୍ଷର ଗୁଡ଼ିକ ବଡ଼ ଓ ଛବିରେ ପୁସ୍ତକଟି ପୂର୍ଣ୍ଣ ।

Approved by the Text-Book Committee, Madras and Behar & Orissa.

# ସାହିତ୍ୟ-ସଂଗ୍ରହ

## ପ୍ରଥମ ଭାଗ

# SAHITYA-SANGRAHA

## PART I

**Selections from Modern Oriya Literature.**

*Publishers*


**THE STUDENTS' STORE,**

**BOOK-SELLERS, PUBLISHERS,**

Stationers & Cabinet-makers,

**BERHAMPUR.**

1935.


ମୂଲ୍ୟ ଅଠ ଅଣା

Price As 8.

# ନିବେଦନ



ସାହିତ୍ୟ-ସଂଗ୍ରହ ପ୍ରଥମ ଭାଗର ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଓ ପଞ୍ଚମ ସଂସ୍କରଣର ସମସ୍ତ ପୁସ୍ତକ ଶେଷ ହୋଇ ଯାଇ ଥିବାରୁ ବହିଟିର ଲୋକପ୍ରିୟତା ଓ ଉପାଦେୟତା ଦୃଷ୍ଟିରେ ତାହାର ଷଷ୍ଠ ସଂସ୍କରଣ ପ୍ରକାଶ କରିବାକୁ ସାହସୀ ହୋଇଅଛୁଁ ।

ଓଡ଼ିଶାର ଯେଉଁ ଲେଖକ ସେମାନଙ୍କ ଲେଖାରୁ କିଛି 'ସାହିତ୍ୟ-ସଂଗ୍ରହ' ପାଇଁ ଦେଇଥିବାରୁ ଆମ୍ଭେମାନେ ସେମାନଙ୍କ ନିକଟରେ କୃତଜ୍ଞ ରହିଲୁ ।

ଏହି 'ସାହିତ୍ୟ-ସଂଗ୍ରହ' ଦୁଇ ଭାଗ ଯାକର ବିକ୍ରୟଲବ୍ଧ ଧନରୁ ଶତକଡ଼ା ପଚିଶ ଟଙ୍କା ଗରିବ ଛାତ୍ରମାନଙ୍କୁ ବୃତ୍ତିସ୍ୱରୂପ ଦିଆଯାଉ ଅଛି ।

ମାନେଜର
ଷ୍ଟୁଡେଣ୍ଟସ୍ ଷ୍ଟୋର
ବ୍ରହ୍ମପୁର, ଗଞ୍ଜାମ

# ସୂଚୀ

## ଗଦ୍ୟାଂଶ

# ପଦ୍ୟାଂଶ







# ସାହିତ୍ୟ-ସଂଗ୍ରହ

## (ପ୍ରଥମ ଭାଗ)



### ବିଶ୍ୱସ୍ତ ଭୃତ୍ୟ

ଥରେ ଜଣେ ରାଜପୁତ କୌଣସି ଦୂର ଦେଶରୁ ଆସି ଶୂଦ୍ରକ ରାଜାଙ୍କ ଦ୍ୱାରରେ ଉପସ୍ଥିତ ହେଲେ । ସେ ଯାଇ ପ୍ରତିହାରକୁ କହିଲେ—'ମୁଁ ଚାକିରି ସକାଶେ ଆସିଛି । ଅନୁଗ୍ରହପୂର୍ବକ ମୋତେ ନେଇ ରାଜାଙ୍କ ସହିତ ସାକ୍ଷାତ୍ କରାଇଦିଅ । ମୁଁ ଜାତିରେ କ୍ଷତ୍ରିୟ ।' ପ୍ରତିହାରୀ ସେହିକ୍ଷଣି ତାହାଙ୍କୁ ସଙ୍ଗରେ ନେଇ ରାଜାଙ୍କ ନିକଟକୁ ଗଲା । ରାଜା ତାଙ୍କର ନାମ ଧାମ ଏବଂ ଆସିବାର ଉଦ୍ଦେଶ୍ୟ ପଚାରିଲେ । ବୀରବର ସମସ୍ତ କଥା କହିଲେ । ଶେଷରେ ଶୂଦ୍ରକ ତାହାଙ୍କୁ ନିଜର ସେବକ କାର୍ଯ୍ୟରେ ନିଯୁକ୍ତ କରିବାକୁ ସ୍ୱୀକୃତ ହେବାରୁ ବୀରବର କହିଲେ—'ମହାରାଜ ! ପ୍ରଥମରେ ମୋର ବେତନ ସ୍ଥିର କରନ୍ତୁ ।'

ରାଜା ତାଙ୍କ ବେତନର ପରିମାଣ ପଚାରିବାରୁ ବୀରବର କହିଲେ —'ପ୍ରତ୍ୟହ ଚାରି ଶତ ସ୍ୱର୍ଣ୍ଣମୁଦ୍ରା ।' ରାଜା ପଚାରିଲେ—'ତୁମ୍ଭେ କାର୍ଯ୍ୟ ସାଧନ ନିମନ୍ତେ କି କି ଉପକରଣ ଆଣିଅଛ ?' ବୀରବର ଉତ୍ତର କଲେ —'ମୋର ଦୁଇ ବାହୁ ଓ ଖଡ୍ଗ—ମୋଠାରେ ଏହି ତିନୋଟି ମାତ୍ର ଉପକରଣ ଅଛି ।'

ଶୂଦ୍ରକ ପ୍ରତିଦିନ ତେତେ ବେତନ ଦେଇ ପାରିବେ ନାହିଁ. ବୋଲି କହିବାରୁ ବୀରବର ତାଙ୍କୁ ପ୍ରଣାମ କରି ସେଠାରୁ ଚାଲିଗଲେ । ପରେ ମନ୍ତ୍ରିମାନେ କହିଲେ, 'ମହାରାଜ ! ଅନ୍ତତଃ ଚାରି ଦିନର ବେତନ ଦେଇ ବୀରବରଙ୍କର ଗୁଣ ପରୀକ୍ଷା କରନ୍ତୁ । ସେ ଏତେ ପାଇବାର ଉପଯୁକ୍ତ କି ନା ଜଣାଯିବ ।' ରାଜା ସେମାନଙ୍କ କଥାରେ ବୀରବରଙ୍କୁ ଡକାଇ ତାଙ୍କ ହସ୍ତରେ ତାମ୍ବୂଳ ଦେଲେ ଏବଂ ଚାରି ଦିନର ବେତନ ଦେଇ ତାଙ୍କୁ ନିଯୁକ୍ତ କଲେ ।

ବୀରବର ସେହି ବେତନ କିପରି ବ୍ୟୟ କରନ୍ତି ରାଜା ଗୋପନରେ ତାହାର ଅନୁସନ୍ଧାନ କଲେ । ବୀରବର ପ୍ରତ୍ୟହ ବେତନର ଅର୍ଦ୍ଧାଂଶ ଦେବତା ଓ ବ୍ରାହ୍ମଣମାନଙ୍କୁ, ଏବଂ ଅବଶିଷ୍ଟ ଧନର ଅଧିକାଂଶ ଦୀନଦୁଃଖି-ମାନଙ୍କୁ ଦାନ କରନ୍ତି । ଶେଷରେ ଯାହା କିଛି ବଳକା ରହେ, ସେଥିରେ ଖାଦ୍ୟଦ୍ରବ୍ୟ ଓ ବିଳାସ ସାମଗ୍ରୀ କିଣନ୍ତି । ସେ ପ୍ରତିଦିନ ଏହି ସମସ୍ତ କାର୍ଯ୍ୟ ଶେଷ କରି ଖଡ୍ଗ ଧରି ରାଜଦ୍ୱାରରେ ରହନ୍ତି । ରାଜାଙ୍କର ଅନୁମତି ବିନା କେଉଁଠାକୁ ଯାଆନ୍ତି ନାହିଁ ।

ଥରେ କୃଷ୍ଣପକ୍ଷର ଚତୁର୍ଦ୍ଦଶୀ ରାତ୍ରିରେ ଶୂଦ୍ରକ କୌଣସି ଲୋକର କରୁଣ ରୋଦନଧ୍ୱନି ଶୁଣିଲେ । ସେତେବେଳେ ଅର୍ଦ୍ଧରାତ୍ରି—ଭୟଙ୍କର ଅନ୍ଧକାର—ଅଳ୍ପ ଅଳ୍ପ ବୃଷ୍ଟି ହେଉଥିଲା । ରାଜା ଦ୍ୱାର ନିକଟରେ ଯାଇ ପଚାରିଲେ—'ଏବେ ଦ୍ୱାରଦେଶରେ କେଉଁମାନେ ଅଛନ୍ତି ?' ବୀରବର ସଙ୍ଗେ ସଙ୍ଗେ ଉତ୍ତର କଲେ—'ଆଜ୍ଞା, ମୁଁ—ବୀରବର ଅଛି ।' ରାଜା କହିଲେ—'ବୀରବର, ତୁମେ ଅତି ଶୀଘ୍ର ଯାଇ ଏହି ରୋଦନର କାରଣ ବୁଝି ଆସ ।' ବୀରବର 'ଯେ ଆଜ୍ଞା' କହି ସେହିକ୍ଷଣି ସେଠାରୁ ଚାଲିଗଲେ । କିଛିକ୍ଷଣ ପରେ ରାଜା ଭାବିଲେ—'ଏହି ଘୋର ଅନ୍ଧକାର ରାତ୍ରିରେ ବୀରବରଙ୍କୁ ଏକାକୀ ପଠାଇ ମୁଁ ଭଲ କାର୍ଯ୍ୟ କରି ନାହିଁ । ଅତଏବ ମୁଁ ମଧ୍ୟ ଯାଇ ତାହାର ଅନୁସନ୍ଧାନ କରିବି ।'

ଶୂଦ୍ରକ ସେହି ମୁହୂର୍ତ୍ତରେ ଖଡ୍ଗ ଧରି ବୀରବରଙ୍କ ପଛେ ପଛେ ଗଲେ । କ୍ରମେ ନଗର-ଦ୍ୱାର ଅତିକ୍ରମ କରି ଚାଲିଲେ । ଏଣେ ବୀରବର ନଗର ବାହାରେ ଥିବା ଉଦ୍ୟାନରେ ଯାଇ ଦେଖିଲେ, ସର୍ବାଳଙ୍କାର ଭୂଷିତା ଅତି ରୂପବତୀ ଜଣେ ଯୁବତୀ ଲୋଚନରେ ନିଜ ବସ୍ତ୍ର ଭିଜାଇ ଦେଇ କାତର କଣ୍ଠରେ ବିଳାପ କରୁଅଛି । ତାହାର ଅଳଂକାର-ଜ୍ୟୋତିରେ ଉପବନଟି ଆଲୋକମୟ ହୋଇଅଛି । ବୀରବର ବିସ୍ମୟ ସହିତ ଯୁବତୀଙ୍କୁ ପଚାରିଲେ—'କିଏ ମା ତୁମେ ? ଏଠାରେ ଏତେ ରାତିରେ କାନ୍ଦୁଛ କାହିଁକି ?'

ଯୁବତୀ ହଠାତ୍ କ୍ରନ୍ଦନରୁ କ୍ଷାନ୍ତ ହୋଇ ମଳିନ ମୁଖରେ କହିଲେ—'ମୁଁ ଏହି ନଗରର ରାଜଲକ୍ଷ୍ମୀ । ଶୂଦ୍ରକଙ୍କର ବାହୁବଳ ଆଶ୍ରୟରେ ବହୁ କାଳ ପରମ ସୁଖସନ୍ତୋଷରେ ଥିଲି । ଦୁଃଖର ବିଷୟ, ରାଜା ଦେବୀ ସର୍ବମଙ୍ଗଳାଙ୍କ ନିକଟରେ ଘୋର ଅପରାଧ କରିଥିବା ଯୋଗୁଁ ସେ ଏ ତିନି ଦିନ ମଧ୍ୟରେ ମୃତ୍ୟୁ ପ୍ରାପ୍ତ ହେବେ । ମୁଁ ତାଙ୍କ ବିୟୋଗରେ ଅନାଥା ହେବି । ଏବେ ମୋତେ ରାଜାଶ୍ରୟ ଛାଡ଼ିବାକୁ ହେବ ବୋଲି ଦୁଃଖରେ କାନ୍ଦୁଛି ।'

ଏହି ଦାରୁଣ ସମାଦରେ ପ୍ରଭୁଭକ୍ତ ବୀରବରଙ୍କ ମୁଖ ଏକାବେଳକେ ଶୁଖିଗଲା । ତାଙ୍କର ସେତେବେଳେ ମନେ ହେଲା, ସତେ ଯେପରି ବଜ୍ରପାତରେ ଉଦ୍ୟାନଟି ତାଙ୍କୁ ଧରି ରସାତଳକୁ ଖସି ଯାଉଛି କିନ୍ତୁ ସେ ବିପଦରେ ଅଧୀର ହେବାର ଲୋକ ନଥିଲେ । ସେ ଅନତିବିଳମ୍ବେ ହୃଦୟରେ ଦମ୍ଭ ବାନ୍ଧି ଉତ୍କଣ୍ଠା ସହିତ ରାଜଲକ୍ଷ୍ମୀଙ୍କୁ କହିଲେ—'ମା, କଣ କଲେ ତୁମେ ରାଜାଙ୍କ ନିକଟରେ ପୁଣି ସୁଖରେ ରହି ପାରିବ ?' ଲକ୍ଷ୍ମୀ କହିଲେ—'ତୁମେ ଯଦି ବତ୍ରିଶ ଶୁଭଲକ୍ଷଣଯୁକ୍ତ ତୁମର ଏକମାତ୍ର ପୁତ୍ର ଶକ୍ତିଧରର ମସ୍ତକ ସ୍ୱହସ୍ତରେ କାଟି ଭଗବତୀ ସର୍ବମଙ୍ଗଳାଙ୍କୁ ଉପହାର

ଦେଇ ପାର ତାହା ହେଲେ ରାଜାଙ୍କର ଶତବର୍ଷ ପରମାୟୁ ହେବ, ମୁଁ ପୁଣି ତାଙ୍କଠାକୁ ଯାଇ ଚିର ସୁଖସନ୍ତୋଷରେ ରହି ପାରିବି ।'

ଲକ୍ଷ୍ମୀ ଏହା କହି ଅଦୃଶ୍ୟ ହୋଇଗଲେ । ବୀରବରଙ୍କର ଆନନ୍ଦ ଓ ଆଶା ଆଉ ସୀମା ମାନିଲା ନାହିଁ । ସେ ସେହି ମୁହୂର୍ତ୍ତରେ ନିଜ ଘରକୁ ଧାଇଁଗଲେ । ସେତେବେଳେ ତାଙ୍କ ସ୍ତ୍ରୀ ଓ ପୁତ୍ର ନିଦ୍ରିତ । ସେମାନଙ୍କୁ ଉଠାଇ ସମସ୍ତ କଥା ଶୁଣାଇଲେ । ତାହା ଶୁଣି ଶକ୍ତିଧର ଆନନ୍ଦରେ ନାଚି ଉଠିଲା । ସେ ହସି ହସି କହିଲା—'ଧନ୍ୟ ମୋର ଜୀବନ ! ଯାହାଙ୍କର ଅନ୍ନରେ ମୁଁ ବଞ୍ଚିଛି, ତାଙ୍କର ମଙ୍ଗଳ ପାଇଁ ପ୍ରାଣ ଦେଇ ଏହି ଜନ୍ମ ସାର୍ଥକ କରିବି । ବାପା, ଏ ପବିତ୍ର କାର୍ଯ୍ୟରେ ଆଉ ଅଧିକ ବିଳମ୍ବ କରିବା ଅନୁଚିତ । ଏହି ମହତ୍ କାର୍ଯ୍ୟରେ ଦେହ ଦାନ କରିବା ଅପେକ୍ଷା ଆଉ ଅଧିକ ଗୌରବର କଥା କଣ ହୋଇପାରେ ? ଏହାଠାରୁ ବଳି ଆଉ ଧର୍ମ କାହିଁ ?'

'ପର ହିତେ ଧନ ପ୍ରାଣ ଯେଉଁ ଜନ କରେ ଦାନ
ତାହାକୁହିଁ ପ୍ରାଜ୍ଞ ବୋଲି ଜାଣିବ ନିଶ୍ଚୟେ,
ଏହି ଭବେ ଚିରଦିନ ନିଚ୍ଛିବ ଏ ଜୀବନ
ପରାର୍ଥେ ତେଜିଲେ ତାର ସାର୍ଥକତା ହୁଏ ।'

ବୀରବରଙ୍କର ସ୍ତ୍ରୀ କହିଲେ—'ଯଦି ଆମ୍ଭମାନେ ଆମ୍ଭ କୁଳୋଚିତ ଏହି ଧର୍ମ ପାଳନ ନକରୁଁ, ତାହାହେଲେ ରାଜାଙ୍କଠାରୁ ଯେଉଁ ଅର୍ଥ ଗ୍ରହଣ କରୁଅଛୁଁ, ସେହି ଋଣରୁ କଦାପି ମୁକ୍ତି ପାଇଁ ପାରିବୁଁ ।'

ପରେ ତିନି ଜଣ ସର୍ବମଙ୍ଗଳାଙ୍କ ମନ୍ଦିରକୁ ଗଲେ । ସେଠାରେ ଦେବୀଙ୍କର ଯଥାବିଧି ବନ୍ଦନାଦି କରି ବୀରବର କହିଲେ, 'ଦେବି, ସର୍ବ-ମଙ୍ଗଳେ, ତୁମ ନିକଟରେ ମୋ ପୁତ୍ରକୁ ବଳି ଦେଉଛି—ତାହାକୁ ଗ୍ରହଣ

କର ପ୍ରସନ୍ନ ହୁଅ । ମହାରାଜ ଶୂଦ୍ରକଙ୍କୁ ଚିରଜୀବୀ ଓ ଚିରଜୟୀ କର ।’ ତିନି ଜଣ ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ସେମାନଙ୍କ ଆନନ୍ଦର ଆଉ ସୀମା ରହିଲା ନାହିଁ । ପରେ ବୀରବର ନିଜ ଖଡ୍‌ଗରେ ଶକ୍ତିଧରର ମସ୍ତକ କର୍ତ୍ତନ କଲେ । କିଛିକ୍ଷଣ ପରେ ଭାବିଲେ—‘ମୁଁ ଏହି ପବିତ୍ର କାର୍ଯ୍ୟଦ୍ୱାରା ପ୍ରଭୁଙ୍କ ଋଣରୁ ମୁକ୍ତ ହୋଇଅଛି । ବର୍ତ୍ତମାନ ପୁତ୍ରଶୋକରେ ଜୀବନ ଧାରଣ କରିବା କଷ୍ଟକର । ପୁତ୍ରହୀନ ଲୋକ ଜୀବିତ ରହି ବା ଲାଭ କଣ ?’ ଏହା ଭାବି ସେ ନିଜ ମସ୍ତକ କାଟି ଦେଲେ । ଏହା ଦେଖି ତାଙ୍କ ସ୍ତ୍ରୀ ବା କିପରି ସଂସାରରେ ରହନ୍ତେ ! ପତି-ପୁତ୍ର-ଶୋକରେ ଅଧୀର ହୋଇ ସେ ମଧ୍ୟ ଖଡ୍‌ଗଦ୍ୱାରା ଆତ୍ମହତ୍ୟା କଲେ ।

ରାଜା ଶୂଦ୍ରକ କିଛି ଦୂରରେ ଲୁଚିରହି ଏହି ସମସ୍ତ ବ୍ୟାପାର ଦେଖୁଥିଲେ । ତିନି ଜଣଙ୍କର ଅଦ୍ଭୁତ ମରଣ ଦେଖି ତାଙ୍କ ଦୁଃଖ ଓ ବିସ୍ମୟର ଆଉ ସୀମା ରହିଲା ନାହିଁ । ସେ ଭାବିଲେ—‘ମୋ ପରି ନଗଣ୍ୟ ମନୁଷ୍ୟ ଯେ କେତେ ଜନ୍ମଲାଭ କରି ମରୁଅଛନ୍ତି, ତାହାର ସଂଖ୍ୟା ନାହିଁ । କିନ୍ତୁ ବୀରବର ତୁଲ୍ୟ ପୁରୁଷକୁ ଅଦ୍ୟ ପର୍ଯ୍ୟନ୍ତ ଜନ୍ମଗ୍ରହଣ କରି ନାହାନ୍ତି ଏବଂ ଭବିଷ୍ୟତରେ ଯେ ଜନ୍ମଲାଭ କରିବେ, ଏହା ବିଶ୍ୱାସ-ଯୋଗ୍ୟ ନୁହେ । ଏପରି ସେବକର ବିରହରେ ରାଜ୍ୟଶାସନ କରିବା ନିଷ୍ପ୍ରୟୋଜନ— ଜୀବନ ଧରି ରହିବା କଷ୍ଟକର ।

ଏହା ଭାବି ଶୂଦ୍ରକ ଆତ୍ମହତ୍ୟା କରିବାକୁ ଉଦ୍ୟତ ହେଉଅଛନ୍ତି, ଏପରି ସମୟରେ ଭଗବତୀ ସର୍ବମଙ୍ଗଳା ହଠାତ୍ ଆବିର୍ଭୂତା ହୋଇ ରାଜାଙ୍କ ହସ୍ତ ଧରି କହିଲେ—‘ଶାନ୍ତ ହୁଅ ବତ୍ସ ! ଏପରି ଦୁଃସାହସ କର ନାହିଁ । ମୁଁ ତୁମର ଭୃତ୍ୟର ସ୍ୱାର୍ଥତ୍ୟାଗରେ ପ୍ରସନ୍ନ ହୋଇଅଛି । ବର୍ତ୍ତମାନ ତୁମର ଆଉ ରାଜ୍ୟ-ନାଶର ଆଶଙ୍କା ନାହିଁ । ବର ପ୍ରାର୍ଥନା କର ।’ ରାଜା ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ—‘ମା, ମୋର ରାଜ୍ୟରେ, ସଂପଦରେ କମ୍ପା

ଜୀବନରେ ପ୍ରୟୋଜନ ନାହିଁ । ମୋ ପ୍ରତି ତୁମର ଯଦି ଅନୁକମ୍ପା ଥାଏ, ତାହା ହେଲେ ମୋର ଅବଶିଷ୍ଟ ପରମାୟୁ ଦେଇ ବୀରବରଙ୍କୁ ଏବଂ ତାଙ୍କ ପତ୍ନୀ ଓ ପୁତ୍ରଙ୍କୁ ପୁନର୍ଜୀବିତ କର । ନଚେତ୍ ଏମାନଙ୍କର ଯେଉଁ ଗତି ହୋଇଅଛି ମୋର ମଧ୍ୟ ସେହି ଗତି ହେବ ।'

ଭଗବତୀ କହିଲେ—'ତୁମେ ଅତିଶୟ ସାଧୁ ଓ ଭୃତ୍ୟବତ୍ସଳ, ତେଣୁ ମୁଁ ତୁମପ୍ରତି ପରମ ସନ୍ତୁଷ୍ଟ ହୋଇଅଛି । ଯାଅ ବତ୍ସ, ଚିରଜୀବୀ ହୁଅ । ଏହି ସେବକ ସପରିବାର ପୁନର୍ବାର ଜୀବିତ ହେଉ ।' ଏହା କହି ସର୍ବମଙ୍ଗଳା ଅନ୍ତର୍ହିତା ହେଲେ ।

ବୀରବର ନିଜ ସ୍ତ୍ରୀ ପୁତ୍ର ସହିତ ପୁନର୍ବାର ଜୀବନ ଲାଭ କରି ଗୃହକୁ ଫେରିଲେ । ଶୂଦ୍ରକ ଅଲକ୍ଷିତ ଭାବରେ ସେଠାରୁ ଚାଲି ଯାଇ ଅନ୍ତଃପୁର ମଧ୍ୟରେ ପ୍ରବିଷ୍ଟ ହେଲେ । କର୍ତ୍ତବ୍ୟପରାୟଣ ବୀରବର ପୁନର୍ବାର ରାଜଭବନର ଦ୍ୱାରରେ ଯାଇ ଉପସ୍ଥିତ ହେଲେ । ରାଜା ସଂବାଦ ପଚାରିବାରୁ ସେ କହିଲେ—'ମହାରାଜ, ଜଣେ ଯୁବତୀ ବିଳାପ କରୁଥିଲା; ମୋତେ ଦେଖିବା ପରେ ଅଦୃଶ୍ୟ ହୋଇଗଲା । ଏହା ଛଡ଼ା ଅନ୍ୟ କୌଣସି ସମ୍ବାଦ ନାହିଁ ।'

ଏହା ଶୁଣି ଶୂଦ୍ରକ ଅଧିକ ପ୍ରୀତ ଓ ଚକିତ ହେଲେ । ଭାବିଲେ ଏପରି ମହାପୁରୁଷ କଦାପି ଆତ୍ମଶ୍ଲାଘା କରିବେ ନାହିଁ । ସର୍ବଦା ସରଳ ଓ ଉଦାର ଭାବରେ ସମସ୍ତଙ୍କୁ ମିଷ୍ଟ କଥା କହିବା ବିଧେୟ । ସ୍ୱାର୍ଥସିଦ୍ଧି ନିମନ୍ତେ କପଟ ମଧୁର ବଚନ ପ୍ରକାଶ କରିବା ଏକାନ୍ତ ଅନୁଚିତ । ଯୋଗ୍ୟ ପାତ୍ରକୁ ପ୍ରଚୁର ଧନ ଦାନ କରିବା ଦାତାର ଧର୍ମ । ସାହସୀ ହୋଇ ଅନ୍ୟ ପ୍ରତି ନିଷ୍ଠୁରତା ଦେଖାଇବା ଦୋଷାବହ । ମହାପୁରୁଷର ଏହି ସମସ୍ତ ଲକ୍ଷଣ ବୀରବରଙ୍କର ଥିଲା ।

ପରଦିନ ସକାଳେ ରାଜା ନଗରର ଶିଷ୍ଟ ଲୋକମାନଙ୍କୁ ଡକାଇ ସେମାନଙ୍କ ଆଗରେ ରାତ୍ରିର ସମସ୍ତ ଘଟନା ପ୍ରକାଶ କଲେ ଏବଂ କୃତଜ୍ଞତାର ନିଦର୍ଶନସ୍ୱରୂପ ବୀରବରଙ୍କୁ କର୍ଣ୍ଣାଟରାଜ୍ୟ ପ୍ରଦାନ କଲେ ।



## ଜଉଗଡ

ଜଉଗଡ ନାମକ ଇତିହାସପ୍ରସିଦ୍ଧ ସ୍ଥାନଟି, ଗଞ୍ଜାମଜିଲ୍ଲାନ୍ତର୍ଗତ, ପୂର୍ବଖଣ୍ଡସ୍ଥିତ ପୁରୁଷୋତ୍ତମପୁର ଗ୍ରାମର ପଶ୍ଚିମ ଦିଗରେ ପ୍ରାୟ ତିନି ମାଇଲ ଦୂରରେ ଅବସ୍ଥିତ । ସ୍ଥାନଟିର ଭାରତବ୍ୟାପିନୀ ଐତିହାସିକ ଖ୍ୟାତି ଅଛି ବୋଲିବାକୁ ହେବ । ସେଠାରେ ପ୍ରାଚୀନ ମଗଧନରେଶ ଅଶୋକ (ବର୍ଦ୍ଧନ) ବା ପ୍ରିୟଦର୍ଶୀ ରାଜାଙ୍କର ୨୫୦ ବର୍ଷର ପ୍ରସ୍ତର ଖୋଦିତ ଲିପିମାଳା ବିଦ୍ୟମାନ ଏବଂ ଏହାହିଁ ତାହାର ଖ୍ୟାତିର ପ୍ରଧାନ କାରଣ । ଭାରତବର୍ଷ ମଧ୍ୟରେ ପୁରୀଜିଲ୍ଲାନ୍ତର୍ଗତ ଭୁବନେଶ୍ୱର ନିକଟବର୍ତ୍ତୀ ଧଉଳି ବା ଧବଳଗିରି, ଅଲ୍ଲାହାବାଦ(ପ୍ରୟାଗ), ଗୁଜରାଟ ପ୍ରଦେଶସ୍ଥ ଗିରିନଗର ବା ଗିରିନାର, ସିଦ୍ଧପୁର (ମୈଶୂର) ପ୍ରଭୃତି ସ୍ଥାନରେ ସୁଦ୍ଧା ଏହି ପ୍ରକାର ଖୋଦିତ ଲିପିମାଳା ଦେଖାଯାଏ ।

ଜଉଗଡଠାରେ ଗୋଟିଏ ଅତି ପ୍ରାଚୀନ ସୁବିଶାଳ ଦୁର୍ଗ ଥିଲା । ତାହା ପ୍ରାୟ ୮୦୦ ଗଜ ଦୈର୍ଘ୍ୟ-ବିସ୍ତାର-ବିଶିଷ୍ଟ ଗୋଟିଏ ବୃହତ୍ ଚତୁରସ୍ର ଆକାର ଧାରଣ କରିଥିଲା । ତାହାର ପ୍ରତ୍ୟେକ ଦିଗରେ ଦୁଇ ଦୁଇ ପ୍ରବେଶ-ଦ୍ୱାର ବିଦ୍ୟମାନ ଥିଲା । ଗଡ଼ କାନ୍ଥମାନ ଜଉରେ ନିର୍ମିତ ହୋଇଥିବାର କଥିତ ଅଛି । ଏ ସମସ୍ତ ବର୍ତ୍ତମାନ ନିତାନ୍ତ ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥାରେ ଦେଖା-

ଯାଏ । ପ୍ରାଚୀର ଉପର ଅବଶିଷ୍ଟାଂଶ ବର୍ତ୍ତମାନ ସୁଦ୍ଧା ମୃତ୍ତିକାରାଶିଦ୍ୱାରା ଆବୃତ ଦେଖାଯାଏ । ସ୍ଥାନେ ସ୍ଥାନେ ତାହାର ଉଚ୍ଚତା ୧୮ ଫୁଟ ଓ ଚଉଡ଼ା ୧୦୦ ଫୁଟରୁ ଊର୍ଦ୍ଧ୍ୱ ଅଟେ । ଦାନ୍ତର ଚତୁର୍ଦ୍ଦିଗ ଗୋଟିଏ ବସ୍ତୃତ ନଦୀ ବେଷ୍ଟନ କରିଥିଲା । ଏହି ନଦୀର ଅଂଶମାନ ଅଦ୍ୟ ପର୍ଯ୍ୟନ୍ତ ବିଦ୍ୟମାନ । କ୍ରମଶଃ ସ୍ଥାନଟି କୃଷି-ଉପଯୋଗୀ ଭୂମିରେ ପରିଣତ ହେଉଅଛି ।

ଏହି ଦାନ୍ତ ସୀମା ମଧ୍ୟରେ କେତେଗୋଟି ସୁନ୍ଦର କ୍ଷୁଦ୍ର କ୍ଷୁଦ୍ର ପାହାଡ଼ ବିଦ୍ୟମାନ । ଅଶୋକଙ୍କର ଖୋଦିତ ଲିପିମାଳା ଏହି ପର୍ବତୋ-ପରିସ୍ଥ ଗୋଟିଏ ଅତି ବୃହତ୍ ଶିଳା ଦେହରେ ପାଳିଭାଷାରେ ଓ ବ୍ରାହ୍ମୀ-ଲିପିରେ ଖୋଦିତ ହୋଇଅଛି । ଏହି ଖୋଦିତ ଲିପିମାଳା Major General Cunningham ଙ୍କଦ୍ୱାରା ପ୍ରଥମତଃ ପ୍ରକାଶିତ ହୋଇଥିଲା । ଅସିକାର Minchin ସାହେବ ଏଥିର କେତେକ ପ୍ରତିଲିପି ୧୮୫୮ ଓ ୧୮୭୧ ଖ୍ରୀଷ୍ଟାବ୍ଦରେ ନେଇଥିଲେ । ପାହାଡ଼ର ଯଥାକ୍ରମେ ପ୍ରାୟ ୧୭ ଓ ୨୦ ଫୁଟ ଦୀର୍ଘ ପ୍ରତି ବିଶିଷ୍ଟ ଦୁଇଗୋଟି ଚିକ୍କଣ ପ୍ରସ୍ତର ଉପରେ ଏହି ଲିପିମାଳା ଖୋଦିତ ହୋଇଅଛି । ଏହା ଦଶଗୋଟି ଆଦେଶ ପ୍ରଚାର କରେ । ଏହା ଛଡା ଅନ୍ୟ ଦୁଇଗୋଟି କ୍ଷୁଦ୍ର ଆଦେଶ ସୁଦ୍ଧା ପୃଥକ୍ ବିଦ୍ୟମାନ । ଏହି ଦୁଇଗୋଟି ଆଦେଶ ଧଉଳି ଛଡ଼ା ଅନ୍ୟ କୌଣସି ସ୍ଥାନରେ ଦେଖାଯାଏ ନାହିଁ । ଏହି ଆଦେଶଗୁଡ଼ିକର ମର୍ମ ସଂକ୍ଷେପରେ ନିମ୍ନରେ ଦିଆ ଗଲା ।

ପ୍ରଥମ ଆଦେଶ—ଭୋଜନ କିମ୍ବା ବଳିଦାନାର୍ଥ ପଶୁବଧ ନିଷିଦ୍ଧ । ଦ୍ୱିତୀୟ ଆଦେଶ— ଅଶୋକଙ୍କ ରାଜ୍ୟର ଓ ଅନ୍ୟ ସ୍ଥାନର ଜନସାଧାରଣ ଏବଂ ପଶୁମାନଙ୍କ ସକାଶେ ଗୋଟିଏ ଚିକିତ୍ସାପ୍ରଣାଳୀ । ତୃତୀୟ ଆଦେଶ— ପିତାମାତା, ବନ୍ଧୁବର୍ଗ, ପୁରୋହିତ ଓ ପଶୁମାନଙ୍କ ପ୍ରତି ମନୁଷ୍ୟର କର୍ତ୍ତବ୍ୟ ସୂଚିତ ପ୍ରଚାର କରୁଅଛି । ଚତୁର୍ଥ ଆଦେଶ—ରାଜ୍ୟର ପର୍ବ ଉତ୍ସବ ଓ

ଅପର୍ୟ ଅବସ୍ଥା ସହିତ ଅଶୋକଙ୍କ ସମୟର ଦୁଃସ୍ଥାବସ୍ଥାର ତୁଳନା କରୁଅଛି । ପଞ୍ଚମ ଅଦେଶ ଭିନ୍ନ ଭିନ୍ନ ଦେଶରେ ବୌଦ୍ଧଧର୍ମର ପ୍ରଚାର ନିମନ୍ତେ ପ୍ରଚାରକ ନିଯୁକ୍ତି ପ୍ରସଙ୍ଗରେ ଲିଖିତ । ଷଷ୍ଠ ଗାର୍ହସ୍ଥ୍ୟ ଜୀବନ ସମ୍ବନ୍ଧରେ ସଦୁପଦେଶ ପ୍ରଦାନାର୍ଥ ଶିକ୍ଷକନିୟୋଗ ବିଷୟରେ ଲିଖିତ ହୋଇଅଛି । ସପ୍ତମ ଅଦେଶ ଜନସାଧାରଣଙ୍କ ଧର୍ମସମ୍ବନ୍ଧରେ ମତଦ୍ଵୈଧ ନିବାରଣ ଓ ଶାନ୍ତିପ୍ରଦାୟକ ଏକମତାବଲମ୍ବନ ସକାଶେ ରାଜାଙ୍କର ମନୋବାଞ୍ଛା ପ୍ରକାଶ କରେ । ପୂର୍ବ ରାଜାମାନଙ୍କ ସମୟରେ ଲୋକେ ଶାସ୍ୱତିକ ସୁଖଭୋଗରେ ଜଡ଼ିତ ଥିଲେ, କିନ୍ତୁ ଅଶୋକଙ୍କ ରାଜତ୍ୱରେ ପାରମାର୍ଥିକ ଓ ଧର୍ମମୟ ଜୀବନ ଯାପନ ଓ ସୁଖର ସୂତ୍ରପାତ ହୋଇଥିଲା, ଅଷ୍ଟମ ଓ ନବମ ଅଦେଶରେ ଏହି ବିଷୟ ଲେଖା ଅଛି । ଦଶମ ଅଦେଶ ସାଂସାରିକ ବିଷୟଜଡ଼ିତ କର୍ମ ଓ ଯଶକୁ ତୁଚ୍ଛ ଜ୍ଞାନ କରି ଅଶୋକଙ୍କର ଉଚ୍ଚ ଧରଣର ଯଶୋକାମନାର ପରିଚୟ ଦିଏ ।

ଅଶୋକଙ୍କର ଏହି ବୌଦ୍ଧଧର୍ମପ୍ରଚାରକ ଅଦେଶଗୁଡ଼ିକ କଳିଙ୍ଗ ପର୍ବତନିବାସିଙ୍କୁ ଲକ୍ଷ୍ୟ କରେ । ଅନ୍ୟ ଦୁଇଗୋଟି ଶେଷ ଅଦେଶ 'ସମାପ'ର ରାଜାଙ୍କୁ ଲକ୍ଷ୍ୟ କରେ । ଏହି ପ୍ରଦେଶ ସେହି ସମୟରେ ପୁରାତନ କଳିଙ୍ଗ ରାଜ୍ୟର ଏକ ଅଂଶ ଥିଲା । ତାହା ଅରଣ୍ୟ ପର୍ବତମୟ ଥିଲା । ଅତି ଅଳ୍ପସଂଖ୍ୟକ ଅର୍ଦ୍ଧସଭ୍ୟ ଆର୍ଯ୍ୟ ଅଧିବାସିଙ୍କ ଛଡ଼ା ସମସ୍ତେ କେବଳ କନ୍ଧ ଓ ଶବରଜାତୀୟ ଲୋକ ଥିଲେ । ମାତ୍ର ଏଠାରେ ସେ ସମୟରେ ଜଣେ ଶାସନକର୍ତ୍ତା ଥିବାର ଉପରଲିଖିତ ଦୁଇ ଗୋଟି ପୃଥକ୍ ଅଦେଶରୁ ସ୍ପଷ୍ଟରୂପେ ଜଣାଯାଏ । ଜଉଗଡ଼ ନିକଟସ୍ଥ ଋଷିକୁଲ୍ୟା ନଦୀ-ତଟରେ ଏହି 'ସମାପ' ନାମକ ପ୍ରଦେଶ ଅବସ୍ଥିତ ଥିଲା ବୋଲି ଅନୁମାନ ହୁଏ । ବର୍ଷାକାଳରେ ଗଞ୍ଜାମଠାରୁ ଅସିକା ପର୍ଯ୍ୟନ୍ତ ନୌକାଦ୍ୱାରା ଏହି ନଦୀରେ ଗମନାଗମନ ସାଧ୍ୟ । ସୁତରାଂ ଏଥିରୁ ଅନୁମାନ କରା-

ଯାଇପାରେ ଯେ, ଋଷିକୁଲ୍ୟାନଦୀତୀରସ୍ଥିତ ଫଳବତୀ ଭୂମିକୁ ଏହି ପ୍ରଦେଶର ପ୍ରଥମ ଶାସନକର୍ତ୍ତା ସ୍ୱାଧୀନ କରିଥିଲେ । ପରେ ଏହି 'ସମାପ' ନାମକ ପ୍ରଦେଶ ପୂର୍ବଖଣ୍ଡ ନାମରେ ବିଦିତ ହୋଇଥିବାର ଜଣାଯାଏ । ପୂର୍ବଖଣ୍ଡର ରାଜାମାନେ ଅତି ପରାକ୍ରମଶାଳୀ ଥିଲେ ଏବଂ ବହୁ ସୁବିସ୍ତୃତ, ଫଳବତୀ ଭୂମି ଜନର ଅଧିକୃତ କରିଥିଲେ । ଷୋଡ଼ଶ ଶତାବ୍ଦୀର ଶେଷାର୍ଦ୍ଧରେ ମୁସଲମାନମାନେ ଏହି ପ୍ରଦେଶ ସ୍ୱାଧୀନ କରିବା ସମୟରେ ପୂର୍ବଖଣ୍ଡର ରାଜବଂଶ ତତ୍ପୂର୍ବରୁ ଲୁପ୍ତ ହୋଇଥିଲା । ଏବଂ ଉକ୍ତ ପ୍ରଦେଶଟି ଓଡ଼ିଶା ରାଜାଙ୍କର ନିଜ ତତ୍ତ୍ୱାବଧାନରେ ଥିଲା । ପୂର୍ବଖଣ୍ଡର ପ୍ରଧାନ ଗ୍ରାମ ଦୁଇ ଗୋଟି— ପୁରୁଷୋତ୍ତମପୁର ଓ ପ୍ରତାପପୁର ଓଡ଼ିଶାର ରାଜା ଶ୍ରୀ ପୁରୁଷୋତ୍ତମଦେବ ଓ ଶ୍ରୀ ପ୍ରତାପରୁଦ୍ରଦେବଙ୍କଦ୍ୱାରା ଏକାଦିକ୍ରମେ ସ୍ଥାପିତ ହୋଇଥିଲା । ପୁରାତନ ମୁସଲମାନ ରାଜ୍ୟରେ ପୂର୍ବଖଣ୍ଡ ପରଗଣା ଅତି ଧନଶାଳୀ ଥିଲା ଓ ତହିଁରୁ ବିଶେଷ କର ଅଦାୟ ହେଉଥିଲା । ଜଉଗଡ଼ଟି ଅବଶ୍ୟ ପୂର୍ବଖଣ୍ଡ ରାଜାଙ୍କଦ୍ୱାରା ନିର୍ମିତ ହୋଇଥିବ । ବୋଧହୁଏ ଗଡ଼ଟି ଏହି ଲିପିଗୁଡ଼ିକ ଖୋଦିତ ହେବା ସମୟରେ ନଥିଲା । ଲିପିଖୋଦିତ ପ୍ରସ୍ତରଟି ଗଡ଼ର ଆବରଣ ଭିତରେ ଅଛି । ଲିପିଗୁଡ଼ିକ ଖୋଦିତ ହେବାବେଳେ ସ୍ଥାନଟି ଅବଶ୍ୟ ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ଭଳି ଅବସ୍ଥାରେ ଥିଲା । ଖ୍ରୀଷ୍ଟପୂର୍ବ ୨୫୦ ପୂର୍ବରେ ଏହି ଗଡ଼ଟି ହେଂମାନ ଥାଇ ପରେ ନଷ୍ଟ ବା ଜୀର୍ଣ୍ଣହୋଇଥିବା ସମ୍ଭବ ନୁହେ । ଏହି ମତ ଠିକ୍ ପରି ବୋଧହୁଏ, ପୂର୍ବଖଣ୍ଡ ରାଜାମାନଙ୍କର ପୁରାତନ ଗଡ଼ ଜଉଗଡ଼ଠାରୁ ଦୁଇମାଇଲ ଦୂରସ୍ଥିତ ଗୋବିନ୍ଦପୁରଠାରେ ଥିଲା । ତା ପରେ ସେମାନେ ପାଣ୍ଡିଆ ନାମକ ଗ୍ରାମ ରାଜଧାନୀ କରି ତାହା ନିକଟରେ ଜଉଗଡ଼ ନିର୍ମାଣ କରିଥିଲେ । ଜଉଗଡ଼ର ଚତୁର୍ଦ୍ଦିଗସ୍ଥ ପ୍ରାୟ ଦୁଇମାଇଲ ମଧ୍ୟରେ ପୂର୍ବଖଣ୍ଡ ରାଜାମାନଙ୍କର ଅନେକ ଗୁଡ଼ିଏ ଶିବମନ୍ଦିର ଅଛି । ସେ ସମୟରେ ଓଡ଼ିଶାରେ ହିନ୍ଦୁମାନଙ୍କ ମଧ୍ୟରେ କେବଳ ଶୈବୋପାସନା ପ୍ରଚଳିତ ଥିଲା । ପୁରାତନ ଗୋବିନ୍ଦପୁର ଗଡ଼

ନିକଟରେ ବିଦ୍ୟମାନ ଥିବା ଗୁପ୍ତେଶ୍ୱରଙ୍କ ମନ୍ଦିର ପ୍ରସିଦ୍ଧ । ଅନ୍ୟାନ୍ୟ ଅନେକ ମନ୍ଦିର ସୁଦ୍ଧା ଅଛି, ଯଥା—ପାଣ୍ଡିଆରେ ଉତ୍ତରେଶ୍ୱର, ନୂଅଗାଁରେ ନୀଳକଣ୍ଠେଶ୍ୱର, ଦେଉଳପଲ୍ଲୀଠାରେ ସକଳେଶ୍ୱର ଏବଂ ଖଇରଡ଼ାଠାରେ କାଳେଶ୍ୱର । ସମସ୍ତ ମନ୍ଦିର ଜଉଗଡ଼ର ଚତୁର୍ଦ୍ଦିଗରେ ଶୋଭମାନ । ମନ୍ଦିରସ୍ଥିତ ଶିବଲିଙ୍ଗ ସକଳ ଅତ୍ୟନ୍ତ ପୁରାତନ । ପୁରାତନ ମନ୍ଦିରଗୁଡ଼ିକ ଭଗ୍ନ ହେବା ପରେ ଦେଶୀୟ ଧନୀ ବ୍ୟକ୍ତିମାନେ ନୂତନ ମନ୍ଦିରମାନ ନିର୍ମାଣ କରାଇ ଅଛନ୍ତି ।

ଜଉଗଡ଼ନିବାସୀ ରାଜା ନିତ୍ୟ ନିୟମିତରୂପେ ଏହି ପଞ୍ଚଶମ୍ଭୁଙ୍କ ପୂଜା କରୁଥିବାର କଥିତ ଅଛି । ଏହି ମନ୍ଦିରଗୁଡ଼ିକ ମଧ୍ୟରୁ ଗୁପ୍ତେଶ୍ୱରଙ୍କ ମନ୍ଦିର ସମ୍ବନ୍ଧରେ କେତେକ ବିଷୟ ଉଲ୍ଲେଖଯୋଗ୍ୟ ।

ଏହି ମନ୍ଦିରଟି ଅନେକଗୁଡ଼ିଏ ସୁବିଶାଳ ଗହ୍ୱରଯୁକ୍ତ ଗୋଟିଏ ପର୍ବତ ଉପରେ ଶୋଭାପାଏ । ଗୁପ୍ତେଶ୍ୱରଙ୍କ ଶିବଲିଙ୍ଗ ଯୁଧିଷ୍ଠିରଙ୍କଦ୍ୱାରା ସ୍ଥାପିତ ବୋଲି କିମ୍ବଦନ୍ତୀ ଅଛି । ତାହା ପର୍ବତର ଅଳ୍ପ ଉଚ୍ଚଦେଶରେ ଗୋଟିଏ ତମିସ୍ରାଚ୍ଛନ୍ନ ଦୀର୍ଘ ଗୁହା ଉଦରେ ସ୍ଥାପିତ । ଏହାଠାରୁ କେତେକ ଦୂର ଉଚ୍ଚରେ ଆଉ ଗୋଟିଏ ଅନ୍ଧକାରମୟ ଓ ବାୟୁପୂର୍ଣ୍ଣ ଗୁହା ଅଛି । ଏଠାରେ ମଧ୍ୟ ଶିବଲିଙ୍ଗ ସ୍ଥାପିତ, କିନ୍ତୁ ପଥାରୋହଣର ଅସୁବିଧା ଯୋଗୁଁ ଅତ୍ୟଳ୍ପ ଲୋକ ମାତ୍ର ଏଠାକୁ ଆସନ୍ତି । କିମ୍ବଦନ୍ତୀ ଅଛି, ପଞ୍ଚପାଣ୍ଡବ ରାଜ୍ୟରୁ ବିତାଡ଼ିତ ହେବା ପରେ କିଛିକାଳ ଏହି ପର୍ବତରେ ଆଶ୍ରୟଗ୍ରହଣ କରିଥିଲେ । ପର୍ବତର ଉପରଭାଗରେ ଗୋଟିଏ ସୁବିଶାଳ ଗୁହାରେ ସେମାନେ ବାସ କରୁଥିବାର କଥିତ ଅଛି । ଏହି ଗୁହାଉଦରରେ ପାଞ୍ଚଗୋଟି ଦୀର୍ଘ ପ୍ରସ୍ତର ଅଛି । ପ୍ରସ୍ତରଗୁଡ଼ିକ ଅତି ସ୍ନିଗ୍ଧଥିବାଯୋଗୁଁ ସ୍ପଷ୍ଟ ଜଣାଯାଏ ଯେ, ଅନେକ କାଳ ପର୍ଯ୍ୟନ୍ତ କୌଣସି ଯୋଗିମାନେ ସେ ସମସ୍ତ ବ୍ୟବହାର କରୁଥିଲେ । ଏହା ନିକଟରେ ସଭାମଣ୍ଡପ ନାମକ ଆଉ ଗୋଟିଏ ସୁବିସ୍ତୃତ ଗହ୍ୱର ଅଛି । ଏଥିରେ ପ୍ରାୟ

ଏକ ଶତ ଲୋକ ସ୍ଥାନ ପାଇ ପାରନ୍ତି । ପାହାଡ଼ର ଏକ ପାର୍ଶ୍ୱରେ ଯୋଗ-ଧ୍ୟାନ ସକାଶେ ଗୋଟିଏ ସୁନ୍ଦର ଗୁମ୍ଫା ଅଛି । ଏହି ଗୁମ୍ଫା ପୃଷ୍ଠ ଦେଶରୁ ପାହାଡ଼ ଶିଖର ପର୍ଯ୍ୟନ୍ତ ଗୋଟିଏ ପ୍ରସ୍ତରନିର୍ମିତ ଛତ୍ର ବର୍ତ୍ତମାନ । ଏହି ଛତ୍ରରେ ଯୋଗଧ୍ୟାନ ସମୟରେ ମସ୍ତକ ସ୍ଥିର ରଖିବା ସକାଶେ ଏକ କ୍ଷୁଦ୍ର ଗର୍ତ୍ତ ଅଛି । ଏହି ଗୁମ୍ଫାରେ ପୂର୍ବମୁଖ ହୋଇ ବସିବାକୁ ହୁଏ । ତାହା କୌଣସି ଯୋଗିଦ୍ୱାରା ବହୁକାଳ ବ୍ୟବହୃତ ହୋଇ ଥିବାର ଜଣାଯାଏ । ପାହାଡ଼ଶିଖରସ୍ଥ ଗୋଟିଏ ଗର୍ତ୍ତ ବା ଖୋଲରେ ସ୍ୱଚ୍ଛ ଜଳ ମିଳେ । ପାର୍ଶ୍ୱବର୍ତ୍ତୀ ନଦୀଗର୍ଭ ସହିତ ଏହି ଖୋଲର ନିକଟ ସମ୍ବନ୍ଧ ଥିବା ପରି ବୋଧହୁଏ । ଏହି ପାହାଡ଼ସ୍ଥ ଗହ୍ୱରଗୁଡ଼ିକର ସୌନ୍ଦର୍ଯ୍ୟ କେବଳ ସ୍ୱଚକ୍ଷୁରେ ସନ୍ଦର୍ଶନ କରିବାଦ୍ୱାରା ସମ୍ୟକରୂପେ ଉପଲବ୍‌ଧି ହୋଇ ପାରିବ ।

ଜଇପୁର ସୀମା ମଧ୍ୟରେ ପୁରାତନ ଗୃହମାନଙ୍କରେ ଭଗ୍ନାବଶେଷ, ପୁରାତନ ମୁଦ୍ରା (ଅଧିକାଂଶ ତାମ୍ରନିର୍ମିତ) ପୁରାତନ ଅଳଙ୍କାର ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ପ୍ରତିମା ସହିତ ଦେଖାଯାଏ । ମୁଦ୍ରାଗୁଡ଼ିକ ବର୍ତ୍ତୁଳ ଓ ଗୋଲ । ତାହାର ଦୁଇ ପାର୍ଶ୍ୱରେ ବାମହସ୍ତ ଉତ୍ତୋଳନ କରି ଗୋଟିଏ ମନୁଷ୍ୟମୂର୍ତ୍ତି ବେଶଧାରୀ ପୁରୁଷରୂପ ଦେଖାଯାଏ । ମୁଦ୍ରାଗୁଡ଼ିକ ଅତ୍ୟନ୍ତ ଘଷିଅ ହୋଇଥିବାଯୋଗୁଁ ତହିଁରେ କୌଣସି ଲିପି ଦେଖାଯାଏ ନାହିଁ । ମୁଦ୍ରାସ୍ଥିତ ରୂପଗୁଡ଼ିକ ଜାହାଜର କପ୍ତାନ ପରି ବିଶେଷତଃ ଦେଖାଯାଏ । ସମ୍ଭବତଃ ଏହା ସେ ସମୟରେ କଳିଙ୍ଗ ବା ଓଡ଼ିଶାର ରାଜାମାନଙ୍କର ପ୍ରଚଳିତ ଥିଲା । କାରଣ ସେମାନଙ୍କ ପ୍ରଜାଗଣ ବାଣିଜ୍ୟାର୍ଥ ବହୁ ଦୂରଦେଶମାନଙ୍କୁ ସମୁଦ୍ରଯାତ୍ରା କରୁଥିଲେ । ଖ୍ରୀଷ୍ଟପୂର୍ବ ୭୫ ଅବ୍ଦରେ ଓଡ଼ିଶାର ଲୋକେ ଯାଇ ଜାଭା ଦ୍ୱୀପରେ ଉପନିବେଶ ସ୍ଥାପନ କରି-ଥିଲେ । Mr. V. A. Smith ତାହାଙ୍କର Catalogue of coins in the Indian Museum, Calcutta ପୁସ୍ତକରେ ଏହି ପ୍ରକାର

ମୁଦ୍ରାଗୁଡ଼ିକର ଉଲ୍ଲେଖ କରିଅଛନ୍ତି ଏବଂ ସେ ସମସ୍ତ ୪ର୍ଥ ବା ୫ମ ଖ୍ରୀଷ୍ଟାବ୍ଦର କଳିଙ୍ଗ ବା ଓଡ଼ିଶାର ରାଜାଙ୍କର ମୁଦ୍ରା ବୋଲି କହିଅଛନ୍ତି ।

ଏଠାରେ ଉଲ୍ଲେଖ କରାଯାଉଅଛି ଯେ, ଠିକ୍ ଏହି ମୁଦ୍ରାଙ୍କିତ ରୂପଟି ଉପରଲିଖିତ ଦୁଇଗୋଟି ପୃଥକ୍ ଓ ଶ୍ଳୋକ ଅଦେଶ ମଧ୍ୟରେ ଖୋଦିତ ହୋଇଅଛି । ଓଡ଼ିଶାର ଇତିହାସ ଲେଖକ Hunter ସାହେବ ଅନୁମାନ କରିଥିବା ପରି ସମ୍ଭବତଃ ଜଉଗଡ଼ ଓ ଧଉଳିଠାରେ ଦେଖା-ଯିବା ଏହି ଦୁଇଗୋଟି ପୃଥକ୍ ଅଦେଶ (ଯାହା କି କଳିଙ୍ଗ ଅଦେଶ ନାମରେ କଥିତ) ଓଡ଼ିଶାର ବା କଳିଙ୍ଗର ରାଜାଙ୍କଦ୍ୱାରା ଖୋଦିତ ହୋଇଥିଲା । ମଗଧାଧିପତି ମୌର୍ଯ୍ୟବଂଶୀୟ ରାଜା ଅଶୋକଙ୍କର ଅଦେଶଗୁଡ଼ିକପ୍ରତି ସ୍ଥାନୀୟ ଶାସନକର୍ତ୍ତାମାନଙ୍କର ବିଶେଷ ଦୃଷ୍ଟି ଆକର୍ଷଣ କରିବା ସକାଶେ ଏହି ଦୁଇଟି କ୍ଷୁଦ୍ର ଅଦେଶ ଖୋଦିତ ହୋଇଥିବ ।

ଅନୁସନ୍ଧାନଦ୍ୱାରା କେତେକ ବର୍ଷ ପୂର୍ବେ ଜଉଗଡ଼ଠାରେ ମିଳିବା ଏକ ସ୍ୱର୍ଣ୍ଣମୁଦ୍ରା ଆମ୍ଭେ ପାଇଅଛୁଁ । ତାହାର ଓଜନ ପ୍ରାୟ ½ ତୋଳା । ତାହାର ଏକ ପାର୍ଶ୍ୱରେ ଗୋଟିଏ ଶାୟିତ ବୃଷଭର ମୂର୍ତ୍ତି ଏବଂ ଅପର ପାର୍ଶ୍ୱରେ (ଅସ) ଲିପି ଦେଖାଯାଏ । ମୁଖଲିଙ୍ଗ, କଳିଙ୍ଗପାଟ୍ଟଣା ଏବଂ ଅନ୍ୟାନ୍ୟ ପୁରାତନ ସ୍ଥଳସମୂହରେ ମଧ୍ୟ ଏପ୍ରକାର ମୁଦ୍ରା ଦେଖାଯାଏ । ବୃଷଭ ମୂର୍ତ୍ତି ପରବର୍ତ୍ତୀ କଳିଙ୍ଗ ବା ଓଡ଼ିଶା ରାଜାମାନଙ୍କର ଶୈବମତର ଚିହ୍ନ ଅଟେ । ଅନ୍ୟପାଖର ଲିପି ଓଡ଼ିଆ ପରି ବୋଧହୁଏ । ତାହାର ଅର୍ଥ 'ଚତୁର୍ଥ ସମ୍ବତ୍ସର' । ସମ୍ଭବତଃ ଏକାଦଶ ଶତାବ୍ଦୀର ଶେଷଭାଗରେ ଓଡ଼ିଶାରେ ରାଜତ୍ୱ କରୁଥିବା ଅନନ୍ତବର୍ମ ଚୋଡ଼ଗଙ୍ଗ ଦେବଙ୍କର ଏହା ରାଜତ୍ୱ ସମ୍ବତ୍ସର ।

ମାଳତୀଗଡ଼ର କେଶରୀବଂଶୀୟ ରାଜାଙ୍କଦ୍ୱାରା ଜଉଗଡ଼ ଆକ୍ରମଣ କରାଯାଇ ନଷ୍ଟ ହୋଇଥିବାର କଥିତ ଅଛି । ଅପିକାଠାରୁ ଉତ୍ତର

ବଗରେ ପ୍ରାପ୍ୟ ଦଶ ମାଇଲ ଦୂରରେ କେଶରୀପଲ୍ଲୀ ନିକଟସ୍ଥ ମାଳତୀ ପର୍ବତ ପାଦଦେଶରେ ମାଲତୀଗଡ ବିଦ୍ୟମାନ ଥିଲା । ସେହି ଗଡ଼ର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ଦେଖାଯାଏ । ତାହାର ରାଜା ମଧ୍ୟ ଅତି ପରାକ୍ରମଶାଳୀ ଥିଲେ । ଜଉଗଡ଼ର ଜଉନିର୍ମିତ ଉଚ୍ଚ ଓ ବୃହଦାକାର ପ୍ରାକାର ଯୋଗୁଁ ତାହା ପ୍ରଥମେ ଦୁର୍ଗମ ଓ ଅଜେୟ ବୋଧ ହେଲା, କାରଣ ପ୍ରାକାରର ଅତ୍ୟଧିକ ସ୍ନିଗ୍ଧତା ଯୋଗୁଁ ଶତ୍ରୁମାନେ ତାହା ଉପରେ ଚଢି ଯିବା ଅସାଧ୍ୟ ହୋଇଥିଲା ଓ ବନ୍ଧୁକର ଗୁଳି ମଧ୍ୟ ଜଉ ଭିତରେ ଭେଦ ପାରୁନଥିଲା । ଶତ୍ରୁମାନେ ପ୍ରାକାରଟି ଜଉରେ ନିର୍ମିତ ହୋଇଥିବା କଥା ଜାଣି ପାରି ନଥିଲେ । ପରେ ଜଣେ ଗୋପାଳୁଣୀ ସେମାନଙ୍କୁ ଏହି ଗୁପ୍ତ ପ୍ରସଙ୍ଗ ଜଣାଇ ଅଗ୍ନିସଂଯୋଗଦ୍ୱାରା ତାହା ଅତି ସହଜରେ ଭସ୍ମୀଭୂତ ହୋଇ ପାରିବା ସମ୍ବାଦ ଦେଇଥିଲା । ଶତ୍ରୁର ମନୋବାଞ୍ଛା ପୂର୍ଣ୍ଣ ହେଲା ।

ଜଉଗଡ଼ ବିନଷ୍ଟ ହୋଇ ଶତ୍ରୁର କରଗତ ହେଲା । ପ୍ରବାଦ ଅଛି ଯେ, ସେହି ଗୋପାଳୁଣୀ ଜଉଗଡର ଧାର୍ମିକ ରାଜାଙ୍କର ଶାପ ଯୋଗୁଁ ହଠାତ୍ ପଥର ପାଲଟି ଗଲା । ଆଜି ସୁଦ୍ଧା ସ୍ଥାନୀୟ ଲୋକେ ଜଉଗଡର ଅନତିଦୂରରେ ଅବସ୍ଥିତ ପ୍ରସ୍ତରସ୍ତମ୍ଭ ପ୍ରତି 'ଗଉଡୁଣୀ ପଥର' ବୋଲି ଅଙ୍ଗୁଳି ନିର୍ଦ୍ଦେଶ କରନ୍ତି ।

ଜଉଗଡ଼ର ଖୋଦିତ ଲିପି ଗୁଡ଼ିକ ସରକାରଙ୍କଦ୍ୱାରା ରକ୍ଷିତ ହୋଇଅଛି । ବହୁକାଳରୁ ସ୍ଥାନୀୟ ଲୋକଙ୍କ ମନରେ ଏକ ଦୃଢ଼ ଧାରଣା ଅଛି ଯେ, ଜଉଗଡ଼ ପାହାଡ଼ର ପାଦଦେଶରେ ଗୁପ୍ତ ସମ୍ପତ୍ତି ଶକ୍ତ ଲୌହଦଣ୍ଡଦ୍ୱାରା ବେଷ୍ଟିତ ହୋଇ ସୁରକ୍ଷିତ ହୋଇଅଛି । ସେ ଯାହା ହେଉ, ସ୍ଥଳଟିର ପ୍ରତ୍ନତତ୍ତ୍ୱ ଭୂଖନନ ଅଦ କ୍ରିୟାଦ୍ୱାରା ଅନୁସନ୍ଧେୟ ।

# ଭାଷାର ସୃଷ୍ଟି

ଦିନ ଥିଲା, ଯେତେବେଳେ ଲିଖନ-ପ୍ରଣାଳୀ ଥିବା ତ ଦୂରର କଥା, ମନୁଷ୍ୟର ମନୋଭାବ ବ୍ୟକ୍ତ କରିବାର ଭାଷା ପର୍ଯ୍ୟନ୍ତ ନଥିଲା । ବ୍ୟାଘ୍ର, ଭଲ୍ଲୁକ ପ୍ରଭୃତି ବନ୍ୟ ପଶୁମାନଙ୍କର ଯେପରି ଭାବ ପ୍ରକାଶ ସକାଶେ କୌଣସି ଭାଷା ନାହିଁ — ଭୟ, କ୍ରୋଧ ବା ଆନନ୍ଦ ଜାତ ହେଲେ ସେମାନେ ଯେପରି ଅସ୍ପଷ୍ଟ ଶବ୍ଦ ଭିନ୍ନ ଅନ୍ୟ କିଛି ଉଚ୍ଚାରଣ କରି ପାରନ୍ତି ନାହିଁ, କୌଣସି ପଦାର୍ଥ ଆବଶ୍ୟକ ହେଲେ ସେମାନେ ଯେପରି ଅନ୍ୟ ନିକଟରେ ନିଜ ନିଜ ମନୋଭାବ ବ୍ୟକ୍ତ କରି ପାରନ୍ତି ନାହିଁ—ମନୁଷ୍ୟ ମଧ୍ୟ ଦିନେ ସେହି ଅବସ୍ଥାରେ ଥିଲା । କିନ୍ତୁ କାଳକ୍ରମେ ମନୁଷ୍ୟ ସେହି ଅବସ୍ଥାରୁ ମୁକ୍ତି ଲାଭ କରିବା ନିମନ୍ତେ ମନୋଭାବ ବ୍ୟକ୍ତ କରିବାର ଭାଷା ଉଦ୍ଭାବନ କଲା । ଭାଷାହିଁ ତାହାକୁ ଅନ୍ୟାନ୍ୟ ଜୀବଠାରୁ ସ୍ୱତନ୍ତ୍ର ଓ ଉନ୍ନତତର ପ୍ରାଣୀରେ ପରିଣତ କରିଅଛି ।

(ଭାଷା ମନୁଷ୍ୟର ସକଳ ଉନ୍ନତିର ମୂଳ । ଭାଷା ମାନବକୁ ପରସ୍ପର ନିକଟରେ ତାହାର ମନୋଭାବ ପ୍ରକାଶ କରିବାର ଶକ୍ତି ଦେଇଅଛି । ତାହା ମାନବକୁ ଏକତାବନ୍ଧନରେ ଆବଦ୍ଧ କରିଅଛି )। ତାହାହିଁ ମନୁଷ୍ୟଙ୍କୁ ସାମାଜିକ, ରାଜନୈତିକ, ସର୍ବ ପ୍ରକାର ବିଧି ବ୍ୟବସ୍ଥା କରିବାର ଉପାୟ ଶିକ୍ଷା ଦେଇ ଉନ୍ନତି-ପଥରେ ଚଳାଇ ଅଛି । ଭାଷା ମନୁଷ୍ୟର ମନ ଉନ୍ନତ, ହୃଦୟ ପବିତ୍ର, ବୁଦ୍ଧି ମାର୍ଜିତ କରେ ଏବଂ ତାହାର କର୍ତ୍ତବ୍ୟ-ଜ୍ଞାନ ଉଦ୍‌ବୁଦ୍ଧ ଓ ବର୍ଦ୍ଧିତ କରି ତାହାକୁ ଧର୍ମ-ପଥରେ ଚାଳିତ କରେ । ଆଦିମ ଯୁଗରୁ ଆଧୁନିକ ଯୁଗ ପର୍ଯ୍ୟନ୍ତ ଯେଉଁ ଚିନ୍ତା ଶକ୍ତି ସ୍ରୋତ ବହି ଆସିଅଛି, ଭାଷା ସାହାଯ୍ୟରେହିଁ ତାହା ଆମ୍ଭେମାନେ ଅବଗତ ହୋଇ ପାରୁଅଛୁଁ । ଭାଷାର ସୃଷ୍ଟି ହୋଇ ନ

ଥିଲେ ଲକ୍ଷ ଲକ୍ଷ ବର୍ଷ ଅତିବାହିତ ହେବାପରେ ମଧ୍ୟ ଆଜି ଯେ ଆମ୍ଭେ-ମାନେ ପ୍ରଥମ ଯୁଗର ମନୁଷ୍ୟମାନଙ୍କ ଅପେକ୍ଷା ଉତ୍କୃଷ୍ଟତର ଉନ୍ନତତର ହୋଇ ପାରି ନଥାନ୍ତୁ, ଏଥିରେ କୌଣସି ସନ୍ଦେହ ନାହିଁ ।

ଭାଷା କେବେ କାହାଦ୍ୱାରା ପ୍ରଥମ ସୃଷ୍ଟ ହେଲା, ତାହା କେହି ଜାଣନ୍ତି ନାହିଁ । ସୃଷ୍ଟିର ପ୍ରଥମ ଯୁଗରେ ମନୁଷ୍ୟ ନିଜ ମନୋଭାବ ଯେତେଦୂର ସମ୍ଭବ ଆକାର ଇଙ୍ଗିତରେ ବ୍ୟକ୍ତ କରୁଥିଲା । ପରେ ହୁଏତ କୌଣସି ତୀକ୍ଷ୍ଣବୁଦ୍ଧି କଳ୍ପନାଶୀଳ ବ୍ୟକ୍ତି ଲକ୍ଷ୍ୟ କଲା ଯେ, ଚିତ୍କାର କରିବା ସମୟରେ ମନୁଷ୍ୟର ମୁଖଗହ୍ୱର ଓ ଜିହ୍ୱାର ମାଂସପେଶୀଗୁଡ଼ିକର ଇତସ୍ତତଃ ସଂଚାଳନରେ ବିଭିନ୍ନ ପ୍ରକାର ଶବ୍ଦ ଉଚ୍ଚାରିତ ହୁଏ । ତତ୍ପରେ ସେହି ବ୍ୟକ୍ତି ଏହି ବିଷୟରେ ବହୁ ଗବେଷଣା କରି ଏହାକୁ ମନୋଭାବ ବିନିମୟର ଯନ୍ତ୍ରବିଶେଷ କରିବା ଉଦ୍ଦେଶ୍ୟରେ ଭାଷାର ଉଦ୍ଭାବନ କଲା । ଅସଂଖ୍ୟ ପରିବର୍ତ୍ତନ ପରେ ହୁଏତ ଭାଷା ତାହାର ବର୍ତ୍ତମାନ ଆକାର ଲାଭ କରିଅଛି ।

କଥିତ ଭାଷା ଯୋଗେ ଭାବ ବିନିମୟ କରିବା ମଧ୍ୟ ପରେ ସୁବିଧା-ଜନକ ବୋଧ ହେଲା ନାହିଁ । ଲୋକ ମନେ କଲେ, ଭାଷାକୁ କୌଣସି ସଙ୍କେତଦ୍ୱାରା ପ୍ରକାଶ କରି ପାରିଲେ ତାହା ଅମରତ୍ୱ ଲଭି ପାରନ୍ତା, ଶତ ଶତ ବର୍ଷ ପରେ ଦେଶ ଦେଶାନ୍ତରରେ ମନୋଜ୍ଞଭାବ ପ୍ରବର୍ତ୍ତନ କରାଯାଇ ପାରନ୍ତା । ବେଦ ପରି ବଡ ବଡ଼ ଗ୍ରନ୍ଥ ତ ସବୁଦିନେ ଶୁଣି ଶୁଣି ମନେ ରହିବ ନାହିଁ । ତାହା ଲେଖା ହୋଇ ରହି ନଥିଲେ, ହୁଏତ ଦଶ ପୁରୁଷ ପରେ ଲୋକେ ଭୁଲିଯାଇ ପାରନ୍ତି । ସୁତରାଂ ଭାଷାକୁ ସଙ୍କେତରେ ଲିପିବଦ୍ଧ କରିବାର ଆବଶ୍ୟକତା ହେଲା । (ମନୁଷ୍ୟ ଯେତିକି ଅଭାବ ଉପଲବ୍ଧି କରେ ତାହାର ସେତିକି ଉଦ୍ଭାବନ-ଶକ୍ତି ବାହାରେ । ସେ ସେଥିପାଇଁ ଲିପି ବା ଲିଖିତ ଭାଷା ଉଦ୍ଭାବନ କଲା)।

କିନ୍ତୁ ଲିଖିତ ଭାଷାର ସୃଷ୍ଟି ହେବା ମାତ୍ରକେ ମାନବର ଶିକ୍ଷା-ପଥ ଏକାବେଳକେ ଉନ୍ମୁକ୍ତ ହୋଇ ପାରିନାହିଁ । ମନୁଷ୍ୟ କାଗଜ ଓ ମୁଦ୍ରାଯନ୍ତ୍ରର ଆବିଷ୍କାର ନକରିବା ପର୍ଯ୍ୟନ୍ତ, ସହଜରେ ଅଳ୍ପ ପରିଶ୍ରମରେ ଲେଖା ନକଲ କରିବାର ଉପାୟ ବାହାର ନକରିବା ପର୍ଯ୍ୟନ୍ତ, ଲିଖିତ ଭାଷା ଜନସାଧାରଣର ବିଶେଷ କିଛି କାମରେ ଲାଗିଲା ନାହିଁ । ମନେ କର, ଖଣ୍ଡିଏ ଭଲ ପୁସ୍ତକ ଲିଖିତ ହେଲା । ହାତରେ ଲେଖି ତାହାର ଖଣ୍ଡିଏ ନକଲ ପ୍ରସ୍ତୁତ କରୁ କରୁ ଅନେକ ଦିନ କଟିଯିବ । ତାହାର ଆଉ ଗୋଟିଏ ପ୍ରତିଲିପି ପ୍ରସ୍ତୁତ କରିବା ନିମନ୍ତେ ଆହୁରି କେତେ ଦିନ ଲାଗିବ । ଦିନ ପରେ ଦିନ ଏହିପରି ବ୍ୟୟିତ ହେବା ଫଳରେ, ମନୁଷ୍ୟର ଜୀବନକାଳ ଯେପରି ଏକ ଦିଗରେ ଊଣା ହୋଇ ଆସିବ, ଅନ୍ୟ ଦିଗରେ ତାହା ତୁଳନାରେ ନକଲ ପୁସ୍ତକର ସଂଖ୍ୟା ସେତେଟା ଆଶାନୁରୂପ ବଢ଼ି ପାରିବ ନାହିଁ ।

ଏହା ଛଡ଼ା ଅନ୍ୟ ଅସୁବିଧା ମଧ୍ୟ ଢେର ଥିଲା । ନକଲକାରୀର ହାତଲେଖା ସୁନ୍ଦର ନହେଲେ ଅନାୟାସପୁସ୍ତକପାଠ ଏକ ପ୍ରକାର ଅସମ୍ଭବ ହୋଇ ଉଠୁଥିଲା । ସୁନ୍ଦର ଭାବରେ ଲିଖିତ ଖଣ୍ଡିଏ ମାତ୍ର ନକଲ ପାଇବା ପାଇଁ ଯଥେଷ୍ଟ ଅର୍ଥ ବ୍ୟୟ ହେଉଥିଲା । ସାଧାରଣ ଲୋକଙ୍କର ସେପରି କିଛି ଅର୍ଥବଳ ନଥିଲା କିମ୍ବା ଜ୍ଞାନଲାଭ ପାଇଁ ଏତେ ଅର୍ଥ ବ୍ୟୟ କରିବାର ଆଗ୍ରହ ବି ନଥିଲା । ଅନେକ ସମୟରେ କଦର୍ଯ୍ୟ ହାତଲେଖା ଯୋଗୁଁ ପୁସ୍ତକ ଶୁଦ୍ଧ ଭାବରେ ପଢ଼ାଯାଇ ପାରୁ ନଥିଲା ।

କାଗଜ ଓ ମୁଦ୍ରାଯନ୍ତ୍ରର ଆବିଷ୍କାର ହେବା ଦିନଠୁ ଏହି ସମସ୍ତ ଅଭାବ ଅସୁବିଧା ଏକାବେଳକେ ଦୂର ହୋଇଅଛି । ସେହି ଦିନୁ ମାନବ-ସଭ୍ୟତା ସ୍ରୋତର ଯେଉଁ ନୂତନ ବେଗ ଚାଲିଅଛି, ସେଥିରେ ଜ୍ଞାନାଲୋକ

ପ୍ରସାରର ପନ୍ଥା ଯଥେଷ୍ଟ ସୁଗମ ହୋଇଅଛି । ଅଜ୍ଞାନତା କେଉଁ ଅନ୍ଧେ ହୁରେଇ ଯିବାକୁ ବସିଲାଣି । [ଖାଲି ଏତିକି ନୁହେ, ସେହି ନୂତନ ଜ୍ଞାନାଲୋକ ମାନବର ସକଳ କର୍ମ, ସକଳ ଚିନ୍ତା, ସମସ୍ତ ଗୃହସ୍ଥାଲୀ ଉପରେ ପ୍ରଭାବ ବିସ୍ତାର କରି ତାହାକୁ ନୂତନ ପ୍ରାଣରେ ଗଠନ କରିବାରେ ଲାଗିଅଛି ।]

---

## ବ୍ୟୋମଯାନ

ଆକାଶରେ ସଞ୍ଚରଣ କରିବାର ଚେଷ୍ଟା ବ୍ୟୋମଯାନ ଉଦ୍‌ଭାବନର ମୂଳକାରଣ । ବ୍ୟୋମଯାନ କହିଲେ ବୁଝିବାକୁ ହେବ ଯେ, ଏହା ଗୋଟିଏ ପଶମ ନିର୍ମିତ ବଡ଼ଥଳୀ । ବର୍ଷା ଓ ବାୟୁ ରୋଧ କରିବା ସକାଶେ ଏହାର ଉପରଭାଗ ଭାର୍ଣ୍ଣିସ (Varnish) ଦ୍ୱାରା ଆବୃତ ହୋଇଥାଏ । ଏହାର ନିମ୍ନଦେଶରେ ଗୋଟିଏ ଛିଦ୍ର ଦେଖାଯାଏ । ଛିଦ୍ରଟି ଯୋଡ଼ଣୀ-ଦ୍ୱାରା ରୁଦ୍ଧ । ଯୋଡ଼ଣୀଟି ବାହାରେ ଦୋହଲୁଥିବା ଖଣ୍ଡିଏ ଦଉଡ଼ିରେ ବନ୍ଧା ହୋଇଥାଏ । ଆରୋହୀ ନିମ୍ନଗାମୀ ହେବାକୁ ପ୍ରୟାସ କଲେ ଦଉଡ଼ିଟି ଝିଙ୍କି ଦିଏ । ତାହା ଟାଣିବାର କିଛିକ୍ଷଣ ପରେ ଢାକୁଣୀଟି ଅଳ୍ପ ମେଲା ହୋଇଯାଏ ଏବଂ ଥଳୀରୁ କିଛି ବାଷ୍ପ ବାହାରିଯାଇ ଥଳୀ ହାଲୁକା ହୋଇଯାଏ । ସାଧାରଣତଃ ଏହି ଥଳିଟି ବହୁ ସଂଖ୍ୟକ ଦଉଡ଼ିଦ୍ୱାରା ଆଚ୍ଛାଦିତ ହୋଇ ଗୋଟିଏ ଜାଲ ପରି ଦେଖାଯାଏ । ହାଲୁକା କରିବା ସକାଶେ ଏହା ବେକରେ ଛଅଗ୍ର ହୋଇ ଦଉଡ଼ିଦ୍ୱାରା ବେଷ୍ଟିତ ହୋଇଥାଏ ।

କେହି କେହି ପ୍ରଶ୍ନ କରି ପାରନ୍ତି, ବ୍ୟୋମଯାନ ଆକାଶମାର୍ଗରେ ଉଚ୍ଚରୁ ଉଚ୍ଚତର ଯିବାର କାରଣ କଣ ? ଏହାର ଉତ୍ତରରେ ଏତିକି

ଲୁହାଯାଇ ପାରେ ଯେ, ଶ୍ରେଷେଇ ଶାଳରେ କମ୍ପା କଳସରେ ଗୋଟିଏ ଶ୍ରେଣୀରେ ଚଢ଼ିଲେ ଘରର ନିମ୍ନଦେଶ ଅପେକ୍ଷା ଛାତପଟ ଅଧିକ ଗରମ ବୋଧହୁଏ । ଏହାର କାରଣ, ଥଣ୍ଡା ବାୟୁ ଅପେକ୍ଷା ଗରମ ବାୟୁ ବିଶେଷ ହାଲୁକା ବା ଲଘୁ ହେବା ଯୋଗୁଁ ଗରମ ବାୟୁ ସବୁବେଳେ ଉପରକୁ ଉଠିଥାଏ । ଏହି ଅନୁମାନରୁ ବୈଜ୍ଞାନିକମାନେ ସିଦ୍ଧାନ୍ତ କରିଛନ୍ତି ଯେ, କୌଣସି ହାଲୁକା ଥଳୀରେ ଗରମ ପବନ ଭରଣ କଲେ ଏହା ନିଶ୍ଚୟ ଉପରକୁ ଉଠିବ । ଏହି ଅନୁମାନଲବ୍ଧ ସିଦ୍ଧାନ୍ତ କାର୍ଯ୍ୟରେ ପରିଣତ କରିବାକୁ କୃତସଂକଳ୍ପ ହୋଇ ଏତାଦୃଶ ପଣ୍ଡିତମାନେ ପ୍ରଥମତଃ ଗୋଟିଏ ଥଳୀରେ ଗରମ ବାୟୁ ଦେଇ ଏହା ଉଡ଼ାଇବାକୁ ଆରମ୍ଭ କଲେ । କ୍ରମଶଃ ଥଳୀର ଆକାର ତଦନୁକଳା ସଦୃଶ ବୃଦ୍ଧି ପାଇବାକୁ ଲାଗିଲା । ୧୭୮୩ ଖ୍ରୀଷ୍ଟାବ୍ଦରେ ଡ. ରେଜିୟାର (De. Rezier) ନାମକ ଜଣେ ଫରାସୀ ବୈଜ୍ଞାନିକ ମନୁଷ୍ୟର ଭାର ବହିବା ଭଳି ଗରମ-ବାୟୁ-ପୂରିତ ଗୋଟିଏ ପ୍ରକାଣ୍ଡ ବ୍ୟୋମଯାନ ଉଦ୍ଭାବନ କଲେ । ମାତ୍ର ଗରମ-ବାୟୁ-ପୂରିତ ବ୍ୟୋମଯାନ ସୁବିଧାଜନକ ବୋଧ ନହେବାରୁ ବୈଜ୍ଞାନିକମାନେ ଉଦଯାନ ବା ଜଳଯାନ ଓ କୋଇଲାଧୂଆଁ ବ୍ୟବହାର କଲେ ।

ଆକାଶମାର୍ଗରେ ସଞ୍ଚରଣ କରିବା ବେଳେ ମେଘମାଳା ପ୍ରଭାବରେ ରକ୍ଷ୍, ଓ ପଶମ ନିର୍ମିତ ଥଳୀ ଅତିଶୟ ଆର୍ଦ୍ର ହୋଇ ଭାରି ହୋଇଯାଏ । ଏହି ବିପଦରୁ ଉଦ୍ଧାର ପାଇବା ନିମନ୍ତେ ପ୍ରତ୍ୟେକ ବ୍ୟୋମଯାନରେ ବାଲୁକାପୂର୍ଣ୍ଣ ଥଳୀ ବା ବାଲିମୁଣା ରଖାଯାଇ ଥାଏ । ଉପରକୁ ଉଠିବାକୁ ଚେଷ୍ଟା କଲେ ଆରୋହୀ କେତେକ ବାଲି ତଳକୁ ଖସାଇ ଦିଏ । ଫଳରେ ବ୍ୟୋମଯାନ ହାଲୁକା ହୋଇ ଚଞ୍ଚଳ ଉପରକୁ ଉଠେ । ପ୍ରତ୍ୟେକ ମୁଣାରେ ପ୍ରାୟ ୫୬ ପାଉଣ୍ଡ ଓଜନର ପାତଳ ବାଲି

ହଟଛି ବସି ଯାଇ ଥାଏ । ଏହି ବାଲି ଏତେ ପାତଳ ହୋଇଥାଏ ଯେ, ଭୂପୃଷ୍ଠରେ ପଡ଼ିଥିବା ଫୁଟଂରୁ ସମସ୍ତ ଅଦୃଶ୍ୟ ଭାବରେ ଉଡ଼ିଯାଏ ।

ଏହି ଯନ୍ତ୍ରଟି ଅତି ଅଦ୍ଭୁତ ଭାବରେ ନିମ୍ନଗାମୀ ହୁଏ । ମେଘମାଳାରେ ଆରୋହୀର ଯାନ ଚଳାଇବା ସକାଶେ ଅନ୍ୟ କୌଣସି ଉପାୟ ନାହିଁ । ପବନ ତାହାର ପ୍ରଧାନ ସମ୍ବଳ । ତାହାକୁ ପବନର କ୍ରୀଡ଼ନକ ବୋଲି କହିଲେ ମଧ୍ୟ ଅତ୍ୟୁକ୍ତିର ଆଶଙ୍କା ନାହିଁ । ଏହି କାରଣରୁ ଅବରୋହଣ ଅତୀବ କଷ୍ଟକର । ତଳକୁ ସ୍ୱଚ୍ଛନ୍ଦରେ ଆସିବା ପାଇଁ ଯାନର ବହିର୍ଭାଗରେ ଗୋଟିଏ ବଡ଼ ଦଉଡ଼ି ବନ୍ଧା ହୋଇଥାଏ । ଏହି ଦଉଡ଼ିର ଶେଷରେ ଗୋଟିଏ ନଙ୍ଗର ସଂଲଗ୍ନ ହୋଇଥାଏ । ଭୂପୃଷ୍ଠର କେତେକ ଦୂରରୁ ଏହି ନଙ୍ଗରଟି କୌଣସି ବୃକ୍ଷର ଆଶ୍ରୟ ନେବା ସକାଶେ ନିକ୍ଷିପ୍ତ କରାଯାଏ । ଏହା ମଧ୍ୟ ସମୟ ସମୟରେ ବିପଦ ଜନକ; କାରଣ ନଙ୍ଗରଟି ଅନେକ ସମୟରେ ଭୂମି ଉପରେ ଥିବା ଲମ୍ବା ବୁଦା ପ୍ରଭୃତିରେ ଲାଗି କିଛି ଦୂରକୁ ଘୋଷାରି ହୋଇଯାଏ । ଏଣୁ ଆରୋହୀର ପ୍ରାଣରେ ଆଶଙ୍କା ଜନ୍ମେ । ଏହି ବିପଦରୁ ରକ୍ଷା ପାଇବା ନିମନ୍ତେ କେତେକ ଧନ ଦେଲ୍ଲ ଉପାୟାନ୍ତର ଉଦ୍ଭାବିତ ହୋଇଅଛି । ଆରୋହୀ ଯାନକୁ ଖଣ୍ଡିଏ ପଶମ ଚୌକୋଣ ବା ପ୍ୟାନେଲ୍ (Panel) କାଟି ଦେଇ ଥଳୀରୁ କିଛି ବାଷ୍ପ ଛାଡ଼ି ହୁଏ । ଏତଦ୍ଦ୍ୱାରା ଯାନଟି ଅତି ଶୀଘ୍ର ଭୂଗାମୀ ହୋଇ ମନୁଷ୍ୟକୁ ପ୍ରାଣାଶଙ୍କାରୁ ଏକାବେଳକେ ରକ୍ଷା କରେ ।

ବାୟୁରାଶିର କ୍ରୀଡ଼ାପୁତ୍ତଳିକା ହୋଇ ସୁଦ୍ଧା ଆରୋହୀ ଦେହରେ ପବନର ସ୍ପର୍ଶ ବାଜେ ନାହିଁ । ଏହାର କାରଣ ଏହି ଯେ, ଆମ୍ଭେମାନେ ଆଘାତ ପ୍ରତିଘାତବଶତଃ ପବନ ବହିବାର ଜାଣିପାରୁଁ, ମାତ୍ର ବ୍ୟୋମଯାନ ପବନକୁ କୌଣସି ବାଧା ନଦେବାରୁ ଏହା ଅବଗତ

ଭାବରେ ରହୁଥାଏ । ପୃଥିବୀରୁ ଅଦୃଶ୍ୟ ହୋଇ ବାରିଦମାଳା ଭେଦ କରି ଯିବାବେଳେ ଏହା ଉପରକୁ ଉଠୁଛି କିମ୍ବା ନିଶ୍ଚଳ ରହିଅଛି, ଏହା ଜାଣିବା ଅତ୍ୟନ୍ତ କଷ୍ଟକର । ଅତଏବ ଆରୋହୀ କାଗଜ ଖଣ୍ଡିଏ ପକାଇ ଦେଇ ଯାନର ଗତି ପରୀକ୍ଷା କରେ । କାଗଜ ଖଣ୍ଡି ତଳକୁ ଖସିଲେ ବ୍ୟୋମଯାନ ଉପରକୁ ଯିବାର ଜଣାଯାଏ ଏବଂ ତାହା ସ୍ଥିର ହୋଇ ରହିଲେ କିମ୍ବା ଉପରକୁ ଗତି କଲେ ଯାନ ନିମ୍ନଗାମୀ ହେବାର ଧରାଯାଏ ।

ବ୍ୟୋମଯାନର ଉପକାରିତା ଯୁଦ୍ଧବେଳେ ବିଶେଷ ପରିମାଣରେ ଅନୁଭୂତ ହୁଏ । ଭିନ୍ନ ଭିନ୍ନ ଦେଶରୁ ସମ୍ବାଦ ନେଇ ଭିନ୍ନ ଭିନ୍ନ ସ୍ଥାନରେ ଯଥା ସମୟରେ ଦେଇ ଆସିବା ଏହାର କ୍ଷିପ୍ର ଗତିର ପ୍ରଧାନ ପରିଚୟ । ଗତ ଯୁଦ୍ଧ ସମୟରେ ବେଲୁନ୍ କିପରି ଉପକାରୀ ହୋଇଥିଲା ତାହା ବର୍ଣ୍ଣନା-ତୀତ । ଏହାର ଉପକାର ସଙ୍ଗେ ସଙ୍ଗେ ଅପକାର ମଧ୍ୟ ପ୍ରଚ୍ଛନ୍ନଭାବରେ ଦେଖା ଯାଉଥାଏ । ଜର୍ମାନ୍‌ମାନେ ବ୍ୟୋମଯାନରେ ଯାଇ ବେଲଜିୟମ୍ ପ୍ରଭୃତି ଦେଶ ବୋମା (Bomb) ଦ୍ୱାରା ନଷ୍ଟ କରି ପକାଇଥିବା କଥା ପ୍ରାୟ ସମସ୍ତେ ଜାଣନ୍ତି । ଏ ଭଳି ନୃଶଂସ କାର୍ଯ୍ୟ ବିଜ୍ଞାନର ବିଷମୟ ଫଳ ବୋଲି ପ୍ରତୀୟମାନ ହୁଏ ।

ସ୍ଥୂଳତଃ ଏହି ଉଦ୍ଭାବିତ ଯନ୍ତ୍ରରୁ ଆମ୍ଭେମାନେ ବ୍ୟୋମଗାମୀ ରଥର ଅସ୍ତିତ୍ୱ ଜାଣିପାରୁଁ । ମହାକବି କାଳିଦାସଙ୍କ କୃତ 'ଶକୁନ୍ତଳା' ନାଟକ ପାଠ କଲେ ଦୁଷ୍ମନ୍ତଙ୍କର ଆକାଶଭ୍ରମଣ ଅଳୀକ ବୋଲି ପ୍ରତୀତ ହୁଏ ନାହିଁ । ଭଗବତ୍‌କୃପାରୁ ଏଭଳି ନୂତନ ବ୍ୟୋମଗାମୀ ଯାନ ବିଜ୍ଞାନର ଗୌରବ ଓ ମାନବ-କଳ୍ପନା-ଶକ୍ତିର ସମୁଚିତ ଉତ୍କର୍ଷ ଦେଶେ ଦେଶେ ପରିଚିତ କରୁ ଏବଂ ସଭ୍ୟତାର ବିଜୟବୈଜୟନ୍ତୀ ଉଡ୍ଡୀନ କରୁ, ଏହାହିଁ କାମନା ।



# ରାମଭକ୍ତ ତୁଳସୀଦାସ

ମହାତ୍ମା ତୁଳସୀଦାସ ସରଯୂପାରୀଣ ବ୍ରାହ୍ମଣ ବଂଶରେ ଜନ୍ମପରିଗ୍ରହ କରିଥିଲେ । ଇତିହାସରୁ ଜଣାଯାଏ, ସେ ପରାଶରଗୋତ୍ରଜ ଥିଲେ । ସେ ୧୫୮୨ ସମ୍ବତ୍ସରରେ ଜଗତରେ ଅବତୀର୍ଣ୍ଣ ହୋଇଥିବା ବିଷୟ ଉତ୍କୃଷ୍ଟ ବିଶ୍ୱାସଯୋଗ୍ୟ ବିବରଣ ସମୂହରୁ ପ୍ରକାଶ । ତାହାଙ୍କର ଜନ୍ମକାଳ ଅତି ଦୁର୍ଦ୍ଦଶାପନ୍ନ ଥିଲା । ସେ ଅଭୁକ୍ତମୂଳା ନାମକ ନକ୍ଷତ୍ର ସଂଯୋଗରେ ଭୂମିଷ୍ଠ ହୋଇଥିବା ଯୋଗୁଁ ତାଙ୍କର ଜନ୍ମ ତାଙ୍କ ପିତା-ମାତାଙ୍କର ମୃତ୍ୟୁସୂଚକ ଏବଂ ଭାବୀ ଅମଙ୍ଗଳର ଜ୍ଞାପକସ୍ୱରୂପ ବିବେଚିତ ହୋଇଥିଲା । ଅତଏବ ଭବିଷ୍ୟତ୍ ବିପଦ ନିବାରଣୋଦ୍ଦେଶ୍ୟରେ, କାଳକବଳରୁ ପରିତ୍ରାଣ ପ୍ରାପ୍ତ ହେବା ଅଭିପ୍ରାୟରେ ତୁଳସୀଦାସଙ୍କ ଜନ୍ମର ଅବ୍ୟବହିତ ପରେ ପିତା ମାତା ତାହାଙ୍କୁ ପରିତ୍ୟାଗ କଲେ । ପିତାମାତାଙ୍କ ଦ୍ୱାରା ନିକ୍ଷିପ୍ତ ଶିଶୁଟିକୁ କୌଣସି ସାଧୁ ଗୋସାଇଁ ନେଇ ପ୍ରତିପାଳନ କରିଥିବାର ଅନୁମିତ ହୁଏ । ତୁଳସୀଦାସ ତାହାଙ୍କର 'ବିନୟ ପତ୍ରିକା'ରେ ଏଥି ସମ୍ବନ୍ଧେ ଲେଖି ଅଛନ୍ତି, 'ମୋର ପିତାମାତା ମୋତେ ଜନ୍ମଦାନ କରି ପରିତ୍ୟକ୍ତ କଲେ, ପରମେଶ୍ୱର ସ୍ୱୟଂ ମୋତେ ଦୁଃଖଦୃଷ୍ଟି ଦେଇ ସୃଷ୍ଟି କଲେ ଏବଂ ପରିତ୍ୟାଗ କଲେ ।' ଅନନ୍ତର ଅନାଥ ବାଳକ ତୁଳସୀ ପ୍ରତିପାଳକ ସାଧୁଙ୍କ ସଙ୍ଗେ ବାସ କରି ନାନା ଦେଶ, ତୀର୍ଥ ପରିଭ୍ରମଣ କଲେ, ସାଧୁଙ୍କ ନିକଟରୁ ଏବଂ ଅନ୍ୟାନ୍ୟ ସନ୍ନ୍ୟାସୀମାନଙ୍କଠାରୁ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କ ଚରିତ ଶିକ୍ଷା କଲେ । ସେ ଯେପରି ଶିକ୍ଷା ପ୍ରାପ୍ତ ହୋଇଥିଲେ, ତାଙ୍କ ରାମାୟଣରେ ଶ୍ରୀରାମଚରିତ ସେପରି ବର୍ଣ୍ଣନ କରିଅଛନ୍ତି । ସମ୍ଭବତଃ ଉକ୍ତ ସାଧୁ ତାହାଙ୍କୁ 'ତୁଳସୀଦାସ' ଆଖ୍ୟା ପ୍ରଦାନ କରିଥିଲେ; ତାଙ୍କର

ପୂର୍ବ ନାମ ପୃଥକ୍ ଥିଲା । ଅନେକ ଲୋକ ତୁଳସୀଦାସଙ୍କ ଜନ୍ମସ୍ଥାନ ନାନା ପ୍ରକାର ନିର୍ଦ୍ଦେଶ କରନ୍ତି; କିନ୍ତୁ Grierson ଙ୍କ ମତାନୁସାରେ ତୁଳସୀଦାସ ପ୍ରକୃତରେ ଗଙ୍ଗାଯମୁନା ମଧ୍ୟସ୍ଥିତ ପ୍ରଦେଶ ଦୋଆବ (Doab) ର ତାରି ନାମକ ସ୍ଥଳରେ ପୃଥିବୀ ସ୍ପର୍ଶ କରିଥିବାର ଅନୁମିତ ହୁଏ ।

ତୁଳସୀଦାସ ଯୌବନାବସ୍ଥାରେ ଶୂକର କ୍ଷେତ୍ରରେ(ଅଧୁନାSoron) ବିଦ୍ୟାଭ୍ୟାସ କରିଥିଲେ । ପିତାଙ୍କ ଜୀବଦଶାରେ ସେ ରତ୍ନାବଳୀଙ୍କର ପାଣିଗ୍ରହଣ କରିଥିଲେ ଏବଂ ପିତା ଲୋକାନ୍ତର ପ୍ରାପ୍ତ ହେବା ପରେ ସେ ଗୃହସ୍ଥାଶ୍ରମରେ ସୁଖ ଶାନ୍ତିରେ କାଳଯାପନ କରି ଏକ ପୁତ୍ର ସନ୍ତାନ ଲାଭ କରିଥିଲେ । ତୁଳସୀଦାସ ରାମାନନ୍ଦଙ୍କ ଦ୍ୱାରା ପ୍ରତିଷ୍ଠିତ ବୈଷ୍ଣବ ସଂପ୍ରଦାୟର ଅନ୍ତର୍ଭୁକ୍ତ ଥିବା ଜନ୍ମା ବୈଷ୍ଣବଧର୍ମରେ ଦୀକ୍ଷିତ ହୋଇଥିବାର ପ୍ରତୀତ ହୁଏ । ଉକ୍ତ ସଂପ୍ରଦାୟ ତୁଳସୀଦାସଙ୍କର କେତେକ ପୂର୍ବରୁ ପୂର୍ବେ ପ୍ରତିଷ୍ଠିତ ହୋଇଥିଲା । କିନ୍ତୁ ତୁଳସୀଦାସ ଜଣେ ଏକନିଷ୍ଠ ବୈଷ୍ଣବ-ଧର୍ମାବଲମ୍ବୀ ବୋଲି କହିବା ଭ୍ରମାତ୍ମକ ମାତ୍ର । ସେ ବହୁ ସଂସ୍କୃତ ଧର୍ମଗ୍ରନ୍ଥ ଅନୁସରଣ ଓ ଅବଲମ୍ବନ କରିବା ବିଷୟ ତାଙ୍କ ପ୍ରଣୀତ ରାମାୟଣରେ ଉଲ୍ଲେଖ କରିଅଛନ୍ତି; ଏବଂ ସେ ସ୍ଥାନେ ସ୍ଥାନେ ଶଙ୍କରାଚାର୍ଯ୍ୟଙ୍କର ନିର୍ବିଶେଷ ଓ ଅଦ୍ୱୈତ ଶିକ୍ଷା ଓ ମାୟା ଏବଂ ନିର୍ଗୁଣ ବ୍ରହ୍ମ ବିଷୟକ ପ୍ରଶଂସା ମୁଖରେ ଲେଖିଅଛନ୍ତି । ଶଙ୍କରାଚାର୍ଯ୍ୟମତାବଲମ୍ବୀ ମଧୁସୂଦନ ସରସ୍ୱତୀ ତୁଳସୀ-ଦାସଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଥିଲେ ।

ତୁଳସୀଦାସ ତାଙ୍କ ପତ୍ନୀଙ୍କ ପ୍ରତି ଅତିଶୟ ଅନୁରକ୍ତ ଥିଲେ । ପୁତ୍ର ଜାତ ହେବା ପରେ ଦିନେ ତୁଳସୀଦାସ ବାହାରରୁ ଗୃହ ଆସି ଗୃହରେ ପ୍ରବେଶ ହେବାକ୍ଷଣି ଦେଖିଲେ, ପତ୍ନୀ ଗୃହରେ ନାହାନ୍ତି, ପିତାଙ୍କ ଅଜାଣାରେ

ପିତ୍ରାଳୟକୁ ଗମନ କରିଅଛନ୍ତି । ସେ ଅତିବ ବେଦନାରେ ଜର୍ଜରିତ ହୋଇ ପତ୍ନୀଙ୍କୁ ଦେଖିବା ଅଭିପ୍ରାୟରେ ରାତିରେ ଶ୍ୱଶୁରାଳୟକୁ ଗଲେ । ପତ୍ନୀ ତାହାଙ୍କୁ ଦେଖିବା ମାତ୍ରେ ଯଥୋଚିତ ଅଭ୍ୟର୍ଥନା ଓ ସେବା କରି କହିଲେ, "ରାମଙ୍କଠାରେ ଆପଣଙ୍କର ଭକ୍ତି ନାହିଁ ? ମୋର ଶରୀର କେବଳ ଚର୍ମ ଓ ଅସ୍ଥିର ଏକ ଅବୟବ ମାତ୍ର ।" ଏହା ଶ୍ରୁତିଗୋଚର ହେବା ମାତ୍ରେ ତୁଳସୀ-ଦାସଙ୍କର ଜ୍ଞାନାନ୍ତର ଉପସ୍ଥିତ ହେଲା ଏବଂ ତତ୍‌କ୍ଷଣାତ ସେ ସ୍ୱଗ୍ରାମକୁ ପ୍ରତ୍ୟା-ଗମନ କଲେ । ତୁଳସୀଙ୍କ ମନରେ ଏରୂପ ପ୍ରବଳ ପ୍ରତ୍ୟାବର୍ତ୍ତନ ଆନୟନ କରିବା ତାଙ୍କ ସହଧର୍ମିଣୀଙ୍କର ଅଣୁମାତ୍ର ଅଭିପ୍ରାୟ ନଥିଲା; କେବଳ ରମଣୀଜନୋଚିତ ବ୍ୟଙ୍ଗ ପ୍ରକାଶ କରିଥିଲେ ମାତ୍ର । ତୁଳସୀଦାସ ଶ୍ୱଶୁରା-ଳୟରୁ ଫେରିବା ସମୟରେ ରତ୍ନାବଳୀ ତାଙ୍କର ଅନୁଗାମିନୀ ହୋଇ କରୁଣ ସ୍ୱରରେ କହିଲେ, "ପ୍ରାଣେଶ୍ୱର, ମୋର ପ୍ରାର୍ଥନା ଗ୍ରହଣ କର ଏହି ରାତି ଟା ମାତ୍ର ଏଠାରେ ଅବସ୍ଥାନ କରନ୍ତୁ; ଭୋଜନ ପରେ ଦୁହେଁ ମିଶି ଗ୍ରାମକୁ ଯିବା ।" ହନ୍ତ ହାୟ ! ପ୍ରବଳ ଘୂର୍ଣ୍ଣିବାୟୁ ସ୍ରୋତରେ ସାମାନ୍ୟ ଏକ ବ୍ୟଜନ କପାଟ ଅବା ତିଷ୍ଠି ପାରିବ ! ତୁଳସୀଦାସ ସେହି ସମୟଠାରୁ ସନ୍ନ୍ୟାସ ବ୍ରତ ଅବଲମ୍ବନ କରି ଏବଂ ପାରିବାରିକ ବନ୍ଧନ ସକଳ ଛିନ୍ନ କରି ମୁକ୍ତ ବିଶୁଦ୍ଧ ରାମଭକ୍ତସ୍ୱରୂପ ଦେଶଦେଶାନ୍ତର ପର୍ଯ୍ୟଟନ କରିବାକୁ ଲାଗିଲେ । ସେ ପ୍ରଥମତଃ ଅଯୋଧ୍ୟାରେ, ପରେ କାଶୀରେ ଅବସ୍ଥାନ କଲେ । କାଶୀଠାରୁ ମଥୁରା, ବୃନ୍ଦାବନ, କୁରୁକ୍ଷେତ୍ର, ପ୍ରୟାଗ ଓ ପୁରୀକୁ ବାରମ୍ବାର ପ୍ରୟାଣ କରୁଥିଲେ ।

ଥରେ ପର୍ଯ୍ୟଟନ କରୁଥିବା ବେଳେ ତୁଳସୀଦାସ ଭୃଗୁ ଆଶ୍ରମ ଏବଂ ଅନ୍ୟାନ୍ୟ କେତେକ ସ୍ଥାନକୁ ଯିବା ପରେ ଚମ୍ପାର ଅଧିପତିଙ୍କ ଗମ୍ଭୀର ଦେବ ଭକ୍ତି ଓ ଆଦରରେ ଆକୃଷ୍ଟ ହୋଇ ଗମ୍ପା ଘାଟକୁ ଗଲେ ଏବଂ ସେଠାରେ ଅବସ୍ଥାନ କଲେ । ସେ ସେଠାରୁ ବ୍ରହ୍ମପୁରର ଶିବମନ୍ଦିର ପରିଦର୍ଶନ କରିବା ସକାଶେ ବାହାରିଲେ । ବ୍ରହ୍ମପୁରଠାରୁ ସାହବାଦ ଜିଲ୍ଲାର କଣ୍ଟ (Kant) ନାମକ ସ୍ଥାନକୁ ଗଲେ । ସେ ସେଠାରେ ଥିବାର

ଅଭାବ ଅନୁଭବ କରୁଥିଲେ; କେବଳ ଏହା ନୁହେଁ, ସେହି ସ୍ଥାନର ଲୋକମାନଙ୍କୁ ଅତିଶକ୍ତ ଭୋଗାସକ୍ତ ଥିବାର ଦେଖି ମନରେ ଗୁରୁତର କ୍ଲେଶ ପ୍ରାପ୍ତ ହୋଇଥିଲେ ।

ଯାହାହେଉ ସେହି ସ୍ଥାନର ମଙ୍ଗର ଅହିର ନାମକ ଜଣେକ ଗୋପାଳ ତାଙ୍କ ପ୍ରତି ଅତ୍ୟନ୍ତ ସଦୟ ଥିଲା । ଏକ ଉନ୍ମୁକ୍ତ ପ୍ରାନ୍ତରରେ ତାହାର ଗୋଷ୍ଠ ଏ ଗୋଶାଳା ଥାଏ । ସେ ସେହି ସ୍ଥାନରେ ସନ୍ନ୍ୟାସୀ, ସାଧୁପୁରୁଷ, ଅତିଥି ଅଭ୍ୟାଗତମାନଙ୍କର ସେବା ସତ୍କାର, ଆଦର ଅଭ୍ୟର୍ଥନା କରୁଥିଲା । କିନ୍ତୁ ସେହି ସ୍ଥାନର ଗଉଡ଼ମାନେ ଚୌର୍ଯ୍ୟବୃତ୍ତି କରୁଥିଲେ । ମଙ୍ଗର ମଧ୍ୟ ସଂସର୍ଗରେ ପଡ଼ି ସେହି ଦୋଷରୁ ମୁକ୍ତ ନଥିଲା । ଗୋପାଳ ସେଠାକୁ ତୁଳସୀଦାସଙ୍କୁ ପରମ ନମ୍ରତା ସହକାରେ ନିମନ୍ତ୍ରଣ କରି ନେଲା ଏବଂ ପାନାର୍ଥ ତାହାଙ୍କୁ କିଛି ଦୁଗ୍ଧ ପ୍ରଦାନ କଲା । ତୁଳସୀଦାସ ତାହା ପାନ କଲେ, ପରେ ବର ପ୍ରାର୍ଥନା କରିବା କାରଣ ମଙ୍ଗର ଅହିରକୁ କହିବାରୁ, ଗୋପାଳ ନିବେଦନ କରି କହିଲା, "ମହାତ୍ମନ୍, ଅଘଟନ ଘଟନକାରୀ ଅନନ୍ତଲୀଳାମୟ ଶ୍ରୀ ଭଗବାନଙ୍କ ପଦାରବିନ୍ଦରେ ମୋର ଅଟଳ ଭକ୍ତି ରହୁ, ପୁଣି ତାଙ୍କ ନାମରେ ମୋର ଦୃଢ଼ ବିଶ୍ୱାସ ଜାତ ହେଉ । ମୋର ଅଳ୍ପାୟୁ ପରିବାର ଦୀର୍ଘାୟୁ ହେଉ ।" ତୁଳସୀ ଉତ୍ତରରେ କହିଲେ, 'ତୁ ଅନୁ ତୋ ପରିବାର ଚୌର୍ଯ୍ୟବୃତ୍ତି ନକଲେ ଏବଂ କୌଣସି ବ୍ୟକ୍ତିକୁ ପୀଡ଼ା ନଦେଲେ ତୋର ମନୋବାଞ୍ଛା ପୂର୍ଣ୍ଣ ହେବ ।' ସେହି ବର ସିଦ୍ଧ ହୋଇଥିବାର ବର୍ତ୍ତମାନ କଥିତ ହୁଏ । ବାଲିଆ ଓ ସାହାବାଦ ଜିଲ୍ଲାଦ୍ୱୟରେ ବର୍ତ୍ତମାନ ସୁଦ୍ଧା ଉପରୋକ୍ତ ଉପାଖ୍ୟାନ ପ୍ରଚଳିତ । G. A. Grierson ଲେଖିଅଛନ୍ତି:—ଖ୍ରୀଷ୍ଟାବ୍ଦ ୧୮୮୯ ସାଲରେ ଏହି ଅହିର ବଂଶର ବହାଲି ଅହିର ନାମକ ଜଣେ ବୃଦ୍ଧ ଜୀବିତ ଥିଲା । ଏହି ବଂଶ ଅତିଥି ସେବା ସକାଶେ ପ୍ରସିଦ୍ଧ ଥିଲା । ତୁଳସୀଦାସଙ୍କ ଉପଦେଶକ୍ରମେ ସେମାନେ ଚୌର୍ଯ୍ୟ ବୃତ୍ତି ଛାଡ଼ି ଦେଇଥିଲେ । ତୁଳସୀଦାସ କଣ୍ଠାରୁ ବେଲପଣ୍ଡ୍ ନାମକ

ଏକ ସ୍ଥାନକୁ ଯାଇ ସେଠାରେ ଏକ ପଣ୍ଡିତ ଓ ଏକ କ୍ଷତ୍ରିୟ ସହିତ ସାକ୍ଷାତ କଲେ । ସେ ଦୁହେଁ ତାଙ୍କୁ ସାଦର ଅଭ୍ୟର୍ଥନା କଲେ । ସହରର ନାମଟି (Bela Patant) ସୁନ୍ଦର ନଥିବା ଯୋଗୁଁ ସେହି ସ୍ଥାନର ନାମ 'ରଘୁନାଥପୁର' ରଖିବା ସକାଶେ ତୁଳସୀଦାସ ସେଠାର ଲୋକଙ୍କୁ ପରାମର୍ଶ ଦେଲେ । ସେ ଗ୍ରାମ ସମ୍ବନ୍ଧରେ କଥୋପକଥନ କରିବାବେଳେ ସର୍ବଦା ରାମନାମ ଉଚ୍ଚାରଣର ସୁଯୋଗ ମିଳିବ ବୋଲି ତୁଳସୀଦାସ ସହରର ନାମ ପରିବର୍ତ୍ତନ କରିବା କାରଣ ଉପଦେଶ ଦେଇଥିଲେ । ଉକ୍ତ ସହର ସେହି ସମୟଠାରୁ ରଘୁନାଥପୁର ନାମରେ ଅଭିହିତ ହୋଇ ଆସୁଅଛି ।

ଥରେ ଜଣେ ନରହତ୍ୟାକାରୀ ବାରାଣସୀରେ ଚିତ୍କାର କରି କହୁଛି, "ରାମଙ୍କଠାରେ ଯଦି ତୁମ୍ଭମାନଙ୍କର ଭକ୍ତି ଓ ବିଶ୍ୱାସ ଥାଏ, ତାହାହେଲେ ଏହି ହତ୍ୟାକାରୀକୁ ଭିକ୍ଷା ଦାନ କର ।" ତୁଳସୀଦାସ ମଧୁର, ପବିତ୍ର ରାମନାମ ଶ୍ରବଣ କରି ଉକ୍ତ ଭିକ୍ଷୁକକୁ ନିଜ ଗୃହକୁ ଡ଼ାକି ନେଲେ, ତାହାକୁ ଭୋଜନାର୍ଥ ପବିତ୍ର ପ୍ରଭୁ ପ୍ରସାଦ ପ୍ରଦାନ କଲେ ଏବଂ ହତ୍ୟାକାରୀ ପାପମୁକ୍ତ ହୋଇ ଥିବାର ଘୋଷଣା କରି ଶ୍ରୀରାମ ସ୍ତୁତି ଗାନ କଲେ । ବାରାଣସୀର ବ୍ରାହ୍ମଣମାନେ ଏକ ପ୍ରକାଣ୍ଡ ସଭା ଅହ୍ୱାନ କରି ମହାତ୍ମା ଦାସଙ୍କୁ ନିମନ୍ତ୍ରଣ କଲେ ଏବଂ ସଭାସ୍ଥଳରେ ତାହାଙ୍କୁ ଜିଜ୍ଞାସା କଲେ, "ହତ୍ୟାକାରୀ ପାପରୁ କିପରି ମୁକ୍ତ ହେଲା ? ଆପଣ ତାହା ସହିତ କିପରି ଓ କି ହେତୁ ଭୋଜନ କଲେ ?" ତୁଳସୀ ଉତ୍ତର କଲେ, "ତୁମ୍ଭେମାନେ ଧର୍ମଗ୍ରନ୍ଥ ସକଳ ଅଧ୍ୟୟନ କର । ଧର୍ମତତ୍ତ୍ୱ ତୁମ୍ଭମାନଙ୍କ ହୃଦୟରେ ଅଦ୍ୟାପି ପ୍ରବେଶ କରି ନାହିଁ । ତୁମ୍ଭମାନଙ୍କର ବିବେକ ପରିପକ୍ୱ ହୋଇନାହିଁ ଏବଂ ଜ୍ଞାନ ଅପରିପକ୍ୱ ଥିବାରୁ ତୁମ୍ଭ ହୃଦୟରୁ ଅଜ୍ଞାନାନ୍ଧକାରରାଶି ବିଦୂରିତ ହୋଇ ନାହିଁ ।" ବ୍ରାହ୍ମଣମାନେ ପୁନର୍ବାର ପ୍ରଶ୍ନ କଲେ, "ଏହି ବ୍ୟକ୍ତି ଜଣେ ହତ୍ୟାକାରୀ, ସେ କିପରି ମୁକ୍ତି ଲାଭ

କରପାରେ ?" ଯେଉଁ ପ୍ରତ୍ୟକ୍ଷ ପ୍ରମାଣଦ୍ୱାରା ସେମାନଙ୍କ ମନରେ ବିଶ୍ୱାସ ଜନ୍ମିପାରେ, ତୁଳସୀଦାସ ତାହା ପ୍ରଶ୍ନ କରିବାରୁ ବ୍ରାହ୍ମଣମାନେ କହିଲେ, "ହରିବାହନ ପଥରର ବୃଷଭ ଯଦି ହତ୍ୟାକାରୀ ହସ୍ତରୁ ଆହାର ଗ୍ରହଣ କରେ, ତାହାହେଲେ ଆମ୍ଭମାନଙ୍କର ସନ୍ଦେହ ମୋଚନ ହେବ, ମନରେ ପ୍ରତ୍ୟୟ ଜାତ ହେବ ।" ସେହିକ୍ଷଣି ସେହି ହତ୍ୟାକାରୀକୁ ଶିବମନ୍ଦିରକୁ ନେଲେ । ସେଠାରେ ବୃଷଭ ତାହା ହସ୍ତରୁ ଆହାର ନେଇ ଭୋଜନ କଲା । ଏହା ଦେଖି ବ୍ରାହ୍ମଣମାନେ ବିସ୍ମିତହୋଇ ଗଲେ । ଏଭଳି ଭୀଷଣ ପାପିର ପଶ୍ଚାତ୍ତାପ ଓ ଅନୁତାପ ପରମେଶ୍ୱରଙ୍କଦ୍ୱାରା ଗୃହୀତ ହୁଏ—ଏହି ଶିକ୍ଷା ତୁଳସୀଙ୍କ-ଦ୍ୱାରା ପ୍ରଚାରିତ ହେଲା । ଉପରୋକ୍ତ ଅଲୌକିକ ବ୍ୟାପାର ସହସ୍ରାଧିକ ବ୍ୟକ୍ତିଙ୍କ ମନରେ ପ୍ରବଳ ଭାବାନ୍ତର ଆନୟନ କରିଥିଲା ଏବଂ ତଦ୍ଦ୍ୱାରା ସେମାନେ ସେହି ସମୟଠାରୁ ସରଳ ସୁନ୍ଦର ପବିତ୍ର ଜୀବନଯାପନ କରିବାକୁ ଲାଗିଲେ । ଏହି ଅଦ୍ଭୁତ କାଣ୍ଡର ଫଳରେ ମନୁଷ୍ୟମାନେ ସାଧୁ ଓ ଧାର୍ମିକ ଜୀବନ କଟାଇବାର ଦେଖି, କଳିଯୁଗ ଅତିଶୟ କ୍ରୁଦ୍ଧ ହୋଇ ତୁଳସୀଦାସଙ୍କ ନିକଟକୁ ଗଲା ଏବଂ ତାଙ୍କୁ ଭୀତି ପ୍ରଦର୍ଶନ କରି ଉଗ୍ରସ୍ୱରରେ କହିଲା, "ତୁ ମୋର ପାପମୟ ଓ ଅଧର୍ମପୂର୍ଣ୍ଣ ରାଜ୍ୟରେ କଣ୍ଟକସ୍ୱରୂପ, ତୁ ଲୋକମାନଙ୍କର ଈଶ୍ୱରଭକ୍ତି, ସାଧୁତା ଓ ଧର୍ମପରାୟଣତା ରକ୍ଷିତ କରିବାକୁ ପ୍ରତିଜ୍ଞାବଦ୍ଧ ନହେଲେ ତୋତେ ଅଚିରମେ ଉଦରସ୍ଥ କରିବି ।" କଳିର କଥାରେ ଅତ୍ୟନ୍ତ ଭୀତ ହୋଇ ତୁଳସୀ ଏ ସମସ୍ତ ବିଷୟ ହନୁମାନଙ୍କ ନିକଟରେ ଗୁହାରି କରିବାରୁ, ହନୁମାନ ତାହାଙ୍କୁ ଆଶ୍ୱସ୍ତ କରି କହିଲେ, "ତୁଳସି, ତୁମ୍ଭେ ନିରପରାଧ, ତୁମ୍ଭର ଜୀବନ ଦୋଷରହିତ; ଏଣୁ ଭୀତ ହୁଅ ନାହିଁ, ସର୍ବଶକ୍ତିମାନ, ଜଗଦୀଶ୍ୱରଙ୍କ ବିଚାରାଳୟରେ ଅଭିଯୋଗ ଉପସ୍ଥାପିତ କର । ଗୋଟିଏ 'ବିନୟ ପତ୍ରିକା' ଅର୍ଥାତ୍ ଏକ ଅଭିଯୋଗ-ପତ୍ର ଲେଖ, ତୁମ୍ଭର ଗୁହାରି ପ୍ରଭୁଙ୍କ କର୍ତ୍ତୃକ ଗୃହୀତ ହେବାର ବହୁତ ଚେଷ୍ଟା କରିବି । ପରେ ପାଷଣ୍ଡ କଳିକୁ ଶାସ୍ତି ପ୍ରଦାନ କରିବା ସକାଶେ ମୁଁ

ଭଗବାନଙ୍କଦ୍ୱାରା ଅଭିଶପ୍ତ ହେବ । ଏପରି ଏକ ଆଦେଶ ବ୍ୟତିରେକେ ମୁଁ କାହାକୁ ଦଣ୍ଡ ଦେଇ ନପାରେ ।” ତୁଳସୀଙ୍କ ‘ବିନୟ ପତ୍ରିକାର’ ମନୋମୁଗ୍ଧକର ହୃଦୟସ୍ପର୍ଶୀ ସ୍ତମ୍ଭଗୁଡ଼ିକରେ ପରିପୂର୍ଣ୍ଣ । ତୁଳସୀଦାସ ଜଣେ ଦୁରାତ୍ମା ମହାପାପୀ ନରହନ୍ତାକୁ ଉପରୁ ପ୍ରେମ ଓ ଆଦର କଲେ ଏବଂ ନିଜର ଉଦାରତା ଓ ଅନୁଗ୍ରହ ବଳରେ ସେହି ପାପିଷ୍ଠକୁ ଉପରୁ ଏକ ପ୍ରକୃତ ରାମଭକ୍ତରେ ପରିଣତ କଲେ—ସେ ସମସ୍ତ ‘ବିନୟ ପତ୍ରିକାର’ ପ୍ରଧାନ ବିଷୟ ।

ତୁଳସୀଦାସ ଜଣେ ସ୍ମାର୍ତ୍ତ ବୈଷ୍ଣବରୂପେ ସର୍ବପ୍ରଥମରେ ଅଯୋଧ୍ୟାରେ ଅବସ୍ଥାନ କଲେ । ସେଠାରେ ଭଗବାନ୍ ଶ୍ରୀରାମଚନ୍ଦ୍ର ତାହାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ, ଜନସାଧାରଣ ବ୍ୟବହୃତ ଏକ ଚଳିତଭାଷାରେ ଗୋଟିଏ ରାମାୟଣ ରଚନା କରିବା ସକାଶେ ଆଦେଶ ଦେଇଥିବାର କଥିତ ଅଛି । ସେ ଖ୍ରୀଷ୍ଟୀୟ ୧୫୭୪ ସାଲରେ ହିନ୍ଦିଭାଷାରେ ରାମାୟଣ ରଚନା ଆରମ୍ଭ କଲେ; ସେତେବେଳେ ତାଙ୍କର ବୟସ ୪୨ ବର୍ଷ ଥିଲା । ଅରଣ୍ୟକାଣ୍ଡ ରଚନା କରୁଥିବାବେଳେ ତୁଳସୀଦାସ ଓ ବୈଷ୍ଣବମାନଙ୍କ ମଧ୍ୟରେ ମତାନ୍ତର ସଂଘଟିତ ହୋଇଥିଲା । ସେମାନଙ୍କ ଭୋଜନସଂକ୍ରାନ୍ତ ବିଧି ବ୍ୟବସ୍ଥାରେ ସେ ଏକମତ ନଥିଲେ । ଏହି ବିବାଦ ଓ ମତାନ୍ତର ଫଳରେ ତୁଳସୀଦାସ ଅଯୋଧ୍ୟା ତ୍ୟାଗ କରି ବାରଣସୀରେ ଯାଇ ରାମାୟଣ ରଚନା ସମାପ୍ତ କଲେ । ସେ ବାରଣସୀରେ ଗୋଲକକୁଣ୍ଡ ସମୀପସ୍ଥ କାଶୀଘାଟରେ ସ୍ଥାୟୀଭାବରେ ଅବସ୍ଥାନ କଲେ । ଜାହ୍ନବୀ ତୀରରେ ‘ତୁଳସୀ ଘାଟ’ ନାମରେ ବର୍ତ୍ତମାନ ସୁଦ୍ଧା ଏକ ଘାଟ ଦେଖାଯାଏ । ଏହାର ପାର୍ଶ୍ୱରେ ତାଙ୍କଦ୍ୱାରା ଏକ ହନୁମାନ ମନ୍ଦିର ନିର୍ମିତ ହୋଇଥିବାର କଥିତ ଅଛି ।

କିମ୍ବଦନ୍ତୀ ଅଛି, ତାଙ୍କର ପ୍ରକାଣ୍ଡ ରାମାୟଣ କାବ୍ୟ ସମାପ୍ତ ହେବା ପରେ ଦିନେ ତୁଳସୀଦାସ ମଣିକର୍ଣ୍ଣିକା ଘାଟରେ ସ୍ନାନ କରୁଥିଲେ, ଏପରି

ସମୟରେ ଜଣେ ଅଭିମାନୀ ସଂକୀର୍ଣ୍ଣମନା ସଂସ୍କୃତଜ୍ଞ ପଣ୍ଡିତ ତାଙ୍କ ନିକଟକୁ ଯାଇ କହିଲେ, "ଭକ୍ତିଭାଜନ ମହାଶୟ, ଆପଣ ଜଣେ ଉଚ୍ଚଧରଣର ସଂସ୍କୃତ ପଣ୍ଡିତ ହୋଇ ଅତି ସାମାନ୍ୟ ଏକ ଭାଷାରେ ରାମାୟଣ ମହାକାବ୍ୟ ରଚନା କଲେ କାହିଁକି ?" କବି ଉତ୍ତର କଲେ, "ହିନ୍ଦୀଭାଷାରେ ମୁଁ ଯେଉଁ ରଚନା କରିଅଛି ତାହା ଅଶୁଦ୍ଧ, ମନ୍ଦ ହୋଇପାରେ । କିନ୍ତୁ ମୋର ବିଶ୍ୱାସ, ସଂସ୍କୃତଜ୍ଞ ପଣ୍ଡିତମାନଙ୍କର ଲିପିକା ବର୍ଣ୍ଣନା ଅପେକ୍ଷା ଏହା ଉତ୍କୃଷ୍ଟତର ।" ପଣ୍ଡିତ ପ୍ରଶ୍ନ କଲେ, 'କିପରି ?' ତୁଳସୀଦାସ କହିଲେ, "ଗୋଟିଏ ହଳାହଳଗର୍ଭ ଅଳଂକୃତ ପାତ୍ର ଏବଂ ଏକ ପୀୟୂଷପୂର୍ଣ୍ଣ ମୃଣ୍ମୟ ପାତ୍ର ମଧ୍ୟରୁ ତୁମେ କେଉଁ ପାତ୍ରଟି ଗ୍ରହଣ କରିବ ଆଉ କେଉଁଟି ପରିତ୍ୟାଗ କରିବ, ଏହା ଉତ୍ତମରୂପେ ବିବେଚନା କରି କହ ।"

"ରଚନା ସାମାନ୍ୟ ପ୍ରାକୃତ ଭାଷାରେ କିମ୍ବା ସଂସ୍କୃତରେ ହେଉ, ଦେଶୀୟ ଭାଷାରେ କିମ୍ବା ବୈଦେଶିକ ଭାଷାରେ ହେଉ, ପ୍ରଭୁଙ୍କଠାରେ ପ୍ରକୃତ ବିଶ୍ୱାସ ଓ ଭକ୍ତି ରହିଲେ ଯଥେଷ୍ଟ । ପ୍ରଭୁଭକ୍ତି ଅତ୍ୟାବଶ୍ୟକ ଓ ପ୍ରଧାନ । ଶୀତରୁ ରକ୍ଷା ପାଇବା ସକାଶେ ଗୋଟାଏ ମୋଟା ଲୋମ କମ୍ବଳ ଆବଶ୍ୟକ ହେଉଥିବା ସ୍ଥଳେ କିଏ ଅବା ଏକ ପାଟଲୁଗା ବ୍ୟବହାର କରେ ?"

ସମ୍ରାଟ ଅକବରଙ୍କ ସଚିବ ଖ୍ୟାତନାମା ତୋଡରମଲ୍ ତୁଳସୀ-ଦାସଙ୍କର ଜଣେ ପ୍ରଧାନ ମିତ୍ର ଥିଲେ । ସେ ଜଣେ ପରମ ରାମଭକ୍ତ । ତୋଡରମଲ୍ ଖ୍ରୀଷ୍ଟୀୟ ୧୫୮୯ ସାଲରେ ଲୋକାନ୍ତର ପ୍ରାପ୍ତ ହେଲେ, ତାଙ୍କର ସ୍ମରଣାର୍ଥ ତୁଳସୀ ସୁନ୍ଦର କବିତାଟିଏ ଲେଖିଥିଲେ । ସେହି ସମୟରେ ଅମ୍ବରର ସୁପ୍ରସିଦ୍ଧ ମହାରାଜ ମାନସିଂହ, ତାଙ୍କ ସହୋଦର ଜଗତ୍‌ସିଂହ ଏବଂ ଅନ୍ୟାନ୍ୟ କେତେକ ଜଣ ସୁବିଖ୍ୟାତ ରାଜା ତୁଳସୀଦାସଙ୍କ ଦର୍ଶନାଭିପ୍ରାୟରେ ତାଙ୍କ ନିକଟକୁ ଯାଇ ଭକ୍ତି ଓ ସମ୍ମାନ ପ୍ରଦର୍ଶନ କରୁ-

ଥିଲେ । ତହିଁ ନିକଟକୁ ବ ଦେଶର ସୁପ୍ରସିଦ୍ଧ ବ୍ୟକ୍ତିମାନେ ଦର୍ଶନ ସକାଶେ ଆସନ୍ତି, ତାହାଙ୍କ ଥରେ ଜଣେ ତାହାଙ୍କୁ ପ୍ରଶ୍ନ କରିବାରୁ କବି ଉତ୍ତର କରିଥିଲେ, "ମୁଁ ଏକ ସମୟରେ ମୁଷ୍ଟିଭିକ୍ଷା ପ୍ରାର୍ଥନା କରୁଥିଲି, କିନ୍ତୁ ମୁଁ ଏକ ଘଣ୍ଟା କଉଡ଼ି ସୁଦ୍ଧା ପାଇ ପାରୁ ନଥିଲି । ସେ ସମୟରେ ମୋତେ କିଏ ଲୋଡ଼ୁଥିଲା ? କିଏ ପଚାରୁଥିଲା ? କିନ୍ତୁ ନିଃସହାୟର ସହାୟ, ନିରୁପାୟର ଉପାୟ, ଦରିଦ୍ରର ଦାତା ଓ ଅଗତିର ଗତି ଶ୍ରୀରାମଚନ୍ଦ୍ର ମୋର ଜୀବନକୁ ବହୁ ମୂଲ୍ୟବାନ୍ କରିଅଛନ୍ତି । ଦ୍ୱାରେ ଦ୍ୱାରେ ବୁଲି ମୁଷ୍ଟିଭିକ୍ଷା କରୁଥିଲି, କିନ୍ତୁ ବର୍ତ୍ତମାନ ରାଜେଶ୍ୱରମାନେ ମୋର ପାଦପୂଜା କରନ୍ତି । ଏଥିପୂର୍ବେ ରାମ ମୋର ସାହାଯ୍ୟ କରୁନଥିଲେ, କିନ୍ତୁ ରାମ ବର୍ତ୍ତମାନ ମୋର ପ୍ରଧାନ ସହାୟ ।"

ଦିଲ୍ଲୀରୁ କାଶୀକୁ ପ୍ରତ୍ୟାଗମନ କରିବା ପରେ ତୁଳସୀଦାସ ବୃନ୍ଦାବନ ଯାଇ ସେଠାରେ ନଭାଜି ନାମକ କବିଙ୍କ ସହ ସାକ୍ଷାତ୍ କଲେ । ନଭାଜିଙ୍କ କବିତା ଶ୍ରବଣରେ ତୁଳସୀଙ୍କ ହୃଦୟ ଅତିଶୟ ଆନନ୍ଦରେ ନାଚି ଉଠିଲା । ତୁଳସୀ ମଦନଗୋପାଳ ମନ୍ଦିର ପରିଦର୍ଶନ କରିବାକୁ ଯାଇ କହିଥିଲେ, "ପ୍ରକୃତରେ ରାମ ମୋର ପ୍ରଧାନ ସହାୟ ଓ ରକ୍ଷକ, ମୁଁ ତାହାଙ୍କୁ ସ୍ୱେଚ୍ଛାକ୍ରମେ ଦର୍ଶନ କରିବା ବାସନା କରେ ।" ରାମ ତୁଳସୀଙ୍କୁ ମଦନଗୋପାଳ ରୂପରେ ଦର୍ଶନ ଦେଲେ । ପ୍ରଭୁଙ୍କ ଅନୁପମ ସୌନ୍ଦର୍ଯ୍ୟ ଦେଖି ସେ ପରମ ପୁଲକିତ ହେଲେ । କୃଷ୍ଣାବତାର ସୁପ୍ରସିଦ୍ଧ; ରାମ ଏକ ଅସଂପୂର୍ଣ୍ଣ ଓ ସାମାନ୍ୟ ଅବତାର ମାତ୍ର, ଏହା ପ୍ରଭୁଙ୍କ ମୁଖରୁ ଶୁଣି ତୁଳସୀ କହିଲେ, "ମୁଁ ରାମଙ୍କୁ କେବଳ ଦଶରଥ ମହାରାଜଙ୍କ ପୁତ୍ର ବିବେଚନା କରି ତାଙ୍କ ପ୍ରତି ପ୍ରଗାଢ଼ ଭକ୍ତି, ପ୍ରବଳ ବିଶ୍ୱାସ ରଖିଥିଲି ଏବଂ ତାଙ୍କର ଅତୁଳନୀୟ ସୌନ୍ଦର୍ଯ୍ୟର ପ୍ରଶଂସା ଗାନ କରୁଥିଲି, କିନ୍ତୁ ବର୍ତ୍ତମାନ ରାମ ପରମେଶ୍ୱରଙ୍କ ଅବତାର ବୋଲି ଶୁଣି ତାଙ୍କ ପ୍ରତି ମୋର ଭକ୍ତି ଓ ବିଶ୍ୱାସ ସହସ୍ରଗୁଣ ଅଧିକ ହୋଇଅଛି ।"

ତୁଳସୀଦାସ ସମସ୍ତ ସମଦୃଷ୍ଟି ଜୀବ ପ୍ରତି ଅହେତୁକ ସ୍ନେହ ଓ ପ୍ରଗାଢ଼ କରୁଣା ପ୍ରଦର୍ଶନ କରୁଥିଲେ । କୌଣସି ଏକ ସମୟରେ ରାତିବେଳେ କେତେ ଜଣ ତସ୍କର ତୁଳସୀଙ୍କର ଗୃହୋପକରଣ ସକଳ ଅପହରଣ କରିବା ଉଦ୍ଦେଶ୍ୟରେ ତାଙ୍କ ଗୃହକୁ ପ୍ରବେଶ କଲେ । ସେଠାରେ ସେମାନେ ଏକ ଧନୁଶରହସ୍ତ କୃଷ୍ଣଜଳଦାକାର ପୁରୁଷଙ୍କୁ ଦେଖି ଭୀତ ଓ ତ୍ରସ୍ତ ହେଲେ । ସେମାନେ ଯେଉଁ ଆଡ଼େ ଯାଆନ୍ତି, ସେହି ପୁରୁଷ ଶର ଧରି ସେହି ଆଡ଼େ ଯାଉଥାନ୍ତି । ସେମାନେ ଗୃହର ଚତୁର୍ଦ୍ଦିଗରେ ବୁଲିଲେ, କିନ୍ତୁ ସେ ପୁରୁଷ ସେମାନଙ୍କ ନେତ୍ରପଥରୁ ଅନ୍ତର ହେଲେ ନାହିଁ । ନିଶାବସାନରେ ସେମାନେ ତୁଳସୀଙ୍କୁ ପଚାରିଲେ, "ମହାଶୟ, ଆପଣଙ୍କ ଘରେ ଏହି କୃଷ୍ଣବର୍ଣ୍ଣ ପୁରୁଷଟି କିଏ ?" ତୁଳସୀ କ୍ଷଣକାଳ ନୀରବ ରହିଲେ, ପରେ କ୍ରନ୍ଦନ କରିବାକୁ ଲାଗିଲେ । ଜାଣି ପାରିଲେ, ଶ୍ରୀରାମ ତାଙ୍କ ଗୃହର ପ୍ରହରୀ କାର୍ଯ୍ୟ କରୁଥିଲେ । ପରେ ସେ ତାଙ୍କର ସକଳ ଜିନିଷ ଦସ୍ୟୁମାନଙ୍କୁ ପ୍ରଦାନ କଲେ । ତସ୍କରମାନେ ତୁଳସୀଙ୍କଠାରୁ ସୁନ୍ଦର ଓ ପବିତ୍ର ଶିକ୍ଷା ପ୍ରାପ୍ତ ହେଲେ । ତଦ୍ଦ୍ୱାରା ସେମାନଙ୍କର ଭାବାନ୍ତର ଉପସ୍ଥିତ ହେଲା ଏବଂ ସେମାନଙ୍କ ଅନ୍ତଃକରଣ ଶୁଦ୍ଧ ଓ ପରିଷ୍କାର ହୋଇଗଲା ।

ତୁଳସୀଦାସ ଅତି ବୃଦ୍ଧ ହେବାଯାଏ ଜୀବିତ ଥିଲେ । ମରଣ କାଳରେ ତାହାଙ୍କର ବୟସ ୯୧ ବର୍ଷ ହୋଇଥିଲା । ସେ ୧୬୨୩ ଖ୍ରୀଷ୍ଟାବ୍ଦରେ ଦେହତ୍ୟାଗ କରିଥିଲେ । ସେ ତାଙ୍କର ଶେଷ ମୁହୂର୍ତ୍ତରେ ପାଖରେ ଥିବା ଲୋକଙ୍କୁ କହିଥିଲେ, "ମୁଁ ରାମନାମର ମହାତ୍ମ୍ୟ ଗାନ କରିଛି, ବର୍ତ୍ତମାନ ନୀରବ ରହିବି । ବର୍ତ୍ତମାନ ତୁଳସୀ ତୁଣ୍ଡରେ ତୁଳସୀ ପତ୍ର ଓ ସୁବର୍ଣ୍ଣ ଦିଅ ।"

---

# ରାଜଭକ୍ତି

ପୂଜନୀୟ ବ୍ୟକ୍ତିମାନଙ୍କୁ ଭକ୍ତି ପ୍ରଦର୍ଶନ କରିବା ମନୁଷ୍ୟତାର ପରିଚାୟକ, ଏହା ସମସ୍ତ ମନୀଷୀ ସ୍ୱୀକାର କରନ୍ତି । ସେହି ହେତୁରୁ ଅତି ପ୍ରାଚୀନ କାଳରୁ ପୁତ୍ରମାନେ ପିତାମାତା ପ୍ରଭୃତିଙ୍କୁ ଓ ଶିଷ୍ୟମାନେ ଗୁରୁଙ୍କୁ ଯଥାବିଧି ଭକ୍ତି ପ୍ରକାଶ କରିବାର ସୁବ୍ୟବସ୍ଥା ହୋଇଅଛି । ପିତାମାତା ପ୍ରଭୃତି ଯଥାର୍ଥ ଗୁରୁସ୍ଥାନୀୟ, କାରଣ ପ୍ରତି ମନୁଷ୍ୟ ପିତାମାତାଙ୍କଦ୍ୱାରା ଜଗତରେ ଉପନୀତ ହୋଇ ସ୍ୱକର୍ତ୍ତବ୍ୟ ପ୍ରତିପାଳନ କରୁ ଅଛନ୍ତି । କିନ୍ତୁ ପିତାମାତା ମନୁଷ୍ୟର ରୂପମାତ୍ର ଧରଣୀରେ ଉପସ୍ଥାପିତ କରନ୍ତି । ଗୁରୁ ସେହି ରୂପ ମଧ୍ୟରେ ଲୁକ୍କାୟିତ ଥିବା ମନୁଷ୍ୟତ୍ୱକୁ ବିକଶିତ କରନ୍ତି । ଗୁରୁଙ୍କର କୃପା ନହେଲେ ମନୁଷ୍ୟ କେବଳ ନାମମାତ୍ରରେ ପର୍ଯ୍ୟବସିତ ହେବ । ସୁତରାଂ ପିତାମାତା ଓ ଗୁରୁ ନିଶ୍ଚୟ ପୂଜାସ୍ପଦ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଆଉ ଏକ ବ୍ୟକ୍ତି ଅଛନ୍ତି, ସେ ଏମାନଙ୍କ ଅପେକ୍ଷା ମନୁଷ୍ୟ ସମାଜରେ ଅତି ଉଚ୍ଚ ସୋପାନରେ ବିଦ୍ୟମାନ । ବହୁସଂଖ୍ୟକ ପରିବାର ତାହାଙ୍କର କରୁଣାକୁ ନିତ୍ୟ ଅପେକ୍ଷା କରିଅଛନ୍ତି । ତାହାଙ୍କ ପ୍ରସାଦରୁ ବଞ୍ଚିତ ହେଲେ ସମସ୍ତ ପରିବାର ଘୋର ଯନ୍ତ୍ରଣାଗ୍ରସ୍ତ ହେବେ, ଏହା ନିଃସନ୍ଦେହ । ତାହାଙ୍କର ନାମ ରାଜା । ପିତାମାତାଙ୍କଦ୍ୱାରା ଆଗତ ମନୁଷ୍ୟ ଗୁରୁଙ୍କ କୃପାରୁ ପ୍ରକୃତ ମନୁଷ୍ୟତ୍ୱ ଅର୍ଜନ କରେ ସତ୍ୟ, କିନ୍ତୁ ତାହାକୁ ନିରାପଦ କରିବାପାଇଁ ରାଜା ପରମ ସହାୟ । ଜଣେ କୃତବିଦ୍ୟ ବ୍ୟକ୍ତି ଯେବେ ଏକଦଳ ଦସ୍ୟୁଙ୍କଦ୍ୱାରା ଆକ୍ରାନ୍ତ ହୁଅନ୍ତି ତେବେ ତାହାଙ୍କର ସମସ୍ତ ମନୁଷ୍ୟତ୍ୱ ଅକାଳରେ ବିଲୁପ୍ତ ହେବ । ସୁତରାଂ ପିତାମାତା ଓ ଗୁରୁଙ୍କର ସକଳ କରୁଣା ସର୍ବତୋଭାବେ ଚୂର୍ଣ୍ଣୀଭୂତ ହେବ । ଉକ୍ତ ତିନି ଜଣଙ୍କର ପ୍ରସାଦକୁ ନିରାପଦ ରଖିବାପାଇଁ ରାଜା ଏକମାତ୍ର ସାହାଯ୍ୟକାରୀ ଅଟନ୍ତି ।

ପିତାମାତା ନିଜର ସନ୍ତାନମାନଙ୍କୁ ନିରାପଦ ରଖିବା ପାଇଁ ନିଜେ ଯେପରି ବହୁବାର ବିପଦଗ୍ରସ୍ତ ହେବାକୁ କୁଣ୍ଠିତ ହୁଅନ୍ତି ନାହିଁ, ରାଜା ସେହିପରି ରାଜ୍ୟର ସମସ୍ତ ବିପଦକୁ ଅକୁଣ୍ଠିତ ଚିତ୍ତରେ ନିଜ ମସ୍ତକରେ ବହନ କରି ପ୍ରଜାପୁଞ୍ଜଙ୍କୁ ନିରାପଦ ରଖନ୍ତି । ଯେଉଁ ଦେଶରେ ରାଜା ନାହାନ୍ତି, ସେହି ଅରାଜକ ଦେଶ ନିତାନ୍ତ ଘୃଣ୍ୟ ଅଟେ । ସେଥିପାଇଁ ନୀତି ଅଛି "ରାଜ୍ୟଂ ନିନ୍ଦ୍ୟମରାଜକଂ" ଅର୍ଥାତ୍ ଅରାଜକ ରାଜ୍ୟ ନିନ୍ଦନୀୟ ଅଟେ । ସେପରି ଦେଶରେ ବାସ କରିବା ବହୁ ଦୁଷ୍କୃତର ଫଳ ବୋଲି ପ୍ରାଚୀନ ଶାସ୍ତ୍ରକାରମାନେ କହନ୍ତି । ସେନାପତି ଅଭାବରେ ସୈନ୍ୟମାନଙ୍କର ଯେପରି ଘୋର ଦୁର୍ଦ୍ଦଶା ଉପସ୍ଥିତ ହୁଏ, କର୍ଣ୍ଣଧାର ଅଭାବରେ ନୌକାରୋହୀମାନଙ୍କର ଯେପରି ଯନ୍ତ୍ରଣାର ସୀମା ରହେ ନାହିଁ, ସେପରି ଶାସନକର୍ତ୍ତାଙ୍କ ଅଭାବରେ ରାଜ୍ୟର ଅର୍ଥାତ୍ ବହୁସଂଖ୍ୟକ ପରିବାରଙ୍କ ଦୁଃଖର ଇୟତ୍ତା ରହେ ନାହିଁ । ରାଜା କେଉଁ ଉନ୍ନତ ସୋପାନରେ ଅଧିରୂଢ଼ ଓ ତାହାଙ୍କର କର୍ତ୍ତୃତ୍ୱ କେପରି ମହତ୍ତ୍ୱର, ତାହା ସହଜରେ ଅନୁମେୟ । ରାଜାଙ୍କ ପ୍ରତି ଉପଯୁକ୍ତ ଭକ୍ତି ପ୍ରଦର୍ଶନ କରିବା ପ୍ରତ୍ୟେକ ପ୍ରଜାର ପ୍ରଧାନ କର୍ତ୍ତବ୍ୟ, ଏହା କହିବା ପୁନରୁକ୍ତି ମାତ୍ର । ସେହି ହେତୁରୁ ପ୍ରାଚୀନ ଶାସ୍ତ୍ରକାରଗଣ ରାଜାଙ୍କୁ ମାନବ ବୋଲି ସ୍ୱୀକାର କରି ନାହାନ୍ତି । ସେମାନେ କହନ୍ତି, ରାଜା ଏକ ଦେବତାବିଶେଷ । ମହର୍ଷି ମନୁ କହିଅଛନ୍ତି, "ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି ।" ଭଗବାନ୍ ଶ୍ରୀକୃଷ୍ଣ ପ୍ରଚାର କରିଅଛନ୍ତି, 'ନରାଣାଂ ଚ ନରାଧିପଂ" ଅର୍ଥାତ୍ ସ୍ୱୟଂ ଜଗଦୀଶ୍ୱର ରାଜାରୂପରେ ମନୁଷ୍ୟମାନଙ୍କ ଉପସ୍ଥିତ ହୁଅନ୍ତି । ଉଲ୍ଲିଖିତ ଉକ୍ତିମାନଙ୍କରୁ ପ୍ରମାଣ ମିଳୁଅଛି ଯେ, ରାଜା ପ୍ରତ୍ୟେକ ପ୍ରଜାର ସର୍ବତୋଭାବେ ପୂଜାର୍ହ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ରାଜାମାନଙ୍କ ମଧ୍ୟରେ ଶ୍ରେଣୀବିଭାଗ ଅଛି । ଅନେକ ରାଜା ପ୍ରଜାମାନଙ୍କର ସଂପୂର୍ଣ୍ଣ ଶୁଭାକାଂକ୍ଷୀ ଓ ଉତ୍କୃଷ୍ଟ ଶାସନକର୍ତ୍ତା ଅଟନ୍ତି । ଅନ୍ୟ ଏକ

ଶ୍ରେଣୀର ରାଜା ଅଛନ୍ତି, ସେମାନେ ପ୍ରାପ୍ତ ଅଧିକାରର ସଦ୍‌ବ୍ୟବହାର କରି ଜାଣନ୍ତି ନାହିଁ । ସୁତରାଂ ଦୁର୍ଜନ ଓ ସ୍ୱେଚ୍ଛାଚାରୀ ରାଜା ବୋଲି ପରିଚିତ ହୁଅନ୍ତି । ସେମାନଙ୍କର କୁଶାସନରେ ପ୍ରଜାମାନେ ଅତ୍ୟନ୍ତ ଉତ୍ପୀଡ଼ିତ ହୋଇ ନାନା ଭାବରେ ବିଦ୍ରୋହାଚରଣ କରିବାକୁ ବାଧ୍ୟ ହୁଅନ୍ତି । ଫଳତଃ ରାଜା ଶାନ୍ତିରେ କାଳାତିପାତ କରି ପାରନ୍ତି ନାହିଁ । ରାଜ୍ୟରେ ନାନାବିଧ ଛିଦ୍ରର ଉଦ୍ଭବ ହୁଏ । ସୁତରାଂ ଶତ୍ରୁଗଣ ରାଜ୍ୟ ଆକ୍ରମଣ କରି ରାଜ୍ୟେଶ୍ୱରଙ୍କୁ ଅତୀବ ଉତ୍ପୀଡ଼ିତ କରନ୍ତି । ସେହି ହେତୁରୁ ଉକ୍ତି ଅଛି, "ଛିଦ୍ରେଷ୍ୱନର୍ଥା ବହୁଳୀ ଭବନ୍ତି" ଅର୍ଥାତ୍ ଛିଦ୍ର ପାଇଲେ ଅନର୍ଥ ବହୁଳ ପରିମାଣରେ ବଢ଼େ । ପରିଶେଷରେ ରାଜା ପୁନଃ ପୁନଃ ଅକ୍ରାନ୍ତ ହୋଇ ରାଜଶ୍ରୀ ଚ୍ୟୁତ ହେବାକୁ ବାଧ୍ୟ ହୁଅନ୍ତି । ଏହାର ସତ୍ୟତା ଇତିହାସ ମୁକ୍ତକଣ୍ଠରେ ଗାନ କରୁଅଛି । ପ୍ରଜାପାଳକ ସୁରାଜା ସୁକୌଶଳରେ ସମସ୍ତ ପ୍ରଜାଙ୍କୁ ବଶୀଭୂତ କରି ରାଜ୍ୟର ଛିଦ୍ରକୁ ଦୃଢ଼ଭାବରେ ବନ୍ଦ କରନ୍ତି । ସୁତରାଂ ଶତ୍ରୁମାନେ ପ୍ରବେଶପଥ ନପାଇ ହୃଦୟରେ ଦୁରଭିସନ୍ଧି ପୋଷଣ କରିବାକୁ ସାହସୀ ହୁଅନ୍ତି ନାହିଁ । ଅତଏବ ସୁରାଜା ନିଷ୍କଣ୍ଟକଭାବରେ ରାଜଲକ୍ଷ୍ମୀଙ୍କୁ ବହୁକାଳ ସମ୍ଭୋଗ କରନ୍ତି । ଉଦାହରଣସ୍ୱରୂପ ଆମ୍ଭମାନଙ୍କର ବର୍ତ୍ତମାନ ସମ୍ରାଟଙ୍କୁ ଗ୍ରହଣ କରାଯାଇ ପାରେ । ସମ୍ରାଟ ସୁଶାସନ ପ୍ରଭାବରେ ସୁରାଜାମାନଙ୍କ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଅଛନ୍ତି । ସୁତରାଂ ଭାରତଲକ୍ଷ୍ମୀ ତାହାଙ୍କୁ ସଂପୂର୍ଣ୍ଣ ଅନୁକୂଳା ହୋଇ ଅଛନ୍ତି ଓ ବହୁକାଳ ହୋଇଥିବେ । ତାହାଙ୍କର ସୁଶାସନରେ ଭାରତର କିପରି ଶ୍ରୀବୃଦ୍ଧି ସାଧିତ ହୋଇଅଛି ଓ ବର୍ତ୍ତମାନ ମଧ୍ୟ ହେଉଅଛି, ସେ ବିଷୟରେ ଇତିହାସ ଗମ୍ଭୀର ସ୍ୱରରେ ସାକ୍ଷ୍ୟ ଦେଉଛି । ସୁତରାଂ ତାହାର ପୁନରୁକ୍ତି ନିଷ୍ପ୍ରୟୋଜନ । ଅତଏବ ତାହାଙ୍କୁ ନିରନ୍ତର ଭକ୍ତିପ୍ରଦର୍ଶନ କରିବା ଓ କାୟମନୋବାକ୍ୟରେ ତାହାଙ୍କର ମଙ୍ଗଳକାମନା କରିବା ସର୍ବତୋଭାବେ ବିଧେୟ । ଶିଶୁମାନଙ୍କର ସୁକୋମଳ ହୃଦୟରେ ରାଜଭକ୍ତି ଦୃଢ଼ଭାବରେ ଅଙ୍କିତ ହେବା ବାଞ୍ଛନୀୟ ।

କାରଣ ଶିଶୁ ଅବସ୍ଥାରୁ ସମ୍ୟକ୍ ଯତ୍ନ ନକଲେ କୌଣସି କାର୍ଯ୍ୟ ସୁଫଳପ୍ରଦ ହୁଏ ନାହିଁ । ଶିକ୍ଷକ ବିଦ୍ୟାଳୟରେ ଓ ପିତାମାତା ଗୃହରେ ଶିଶୁମାନଙ୍କୁ ରାଜଭକ୍ତି ଶିକ୍ଷା ଦେବା ପାଇଁ ପ୍ରବଳ ଚେଷ୍ଟା କରନ୍ତୁ ଏହିତ ନିବେଦନ ।

(ଜୟ) ରାଜରାଜେଶ୍ୱର ଭାରତ-ଈଶ୍ୱର
ଜୟ ମା ଭାରତେଶ୍ୱରୀ ।
ରାଜଲକ୍ଷ୍ମୀ ସହ ରାଜ ଅହରହ
କରନ୍ତୁ କୃପା ସବଂଶ ।

---

# ଅଦ୍ଭୁତ ଯନ୍ତ୍ରତ୍ରୟ

ଏହି ବିଶ୍ୱବ୍ରହ୍ମାଣ୍ଡରେ ଯେତେ ପ୍ରାଣୀ ଅଛନ୍ତି, ଯେତେ ପଦାର୍ଥ ଅଛି, ସେ ସବୁ ମଧ୍ୟରୁ ଅତି ଅଳ୍ପ ଅମ୍ଭେମାନେ ଖାଲି ଚକ୍ଷୁରେ ଦେଖିପାରୁଁ । ସନ୍ଧ୍ୟା ପରେ ଗଗନ ବକ୍ଷରେ ଯେଉଁ ଅସଂଖ୍ୟ ନକ୍ଷତ୍ର ଦେଖାଯାନ୍ତି, ଅମ୍ଭେମାନେ ସେମାନଙ୍କର କେତେଦୂର ଖବର ରଖୁଁ ? ସେମାନେ କେତେ ବଡ଼, ସେଠାରେ କୌଣସି ଜୀବ ବାସ କରନ୍ତି କି ନା, ଯେ କେତୋଟି ଗ୍ରହ ନକ୍ଷତ୍ର ଦେଖିବାକୁ ପାଉଁ, ସେମାନଙ୍କ ବ୍ୟତୀତ ଅନ୍ୟ ଗ୍ରହ ନକ୍ଷତ୍ର ଅଛନ୍ତି କି ନା, ସେହିପରି ଆଉ କେତେ ଗ୍ରହ ନକ୍ଷତ୍ର ଅଦୃଶ୍ୟ ହୋଇ ଯାଉଛନ୍ତି, ଖାଲି ଚକ୍ଷୁ ସାହାଯ୍ୟରେ ଏ ସବୁ ବିଷୟ ଜାଣିବାର ଉପାୟ ନାହିଁ । ଅମ୍ଭମାନେ ବାସ କରୁଥିବା ଧରାପୃଷ୍ଠରେ, ଆକାଶରେ ଓ ବାୟୁମଣ୍ଡଳରେ, ଅମ୍ଭମାନଙ୍କର ଶକ୍ତିର ବୋଧଗମ୍ୟ ସ୍ଥାନର ବାହାରେ କୌଣସି କ୍ଷୁଦ୍ରାଦପି କ୍ଷୁଦ୍ରତର ପ୍ରାଣୀ ବାସ କରନ୍ତି କି ନା, ତାହା ମଧ୍ୟ ଅମ୍ଭେମାନେ ଦେଖି-

ପାରୁ ନାହୁଁ । (ମନୁଷ୍ୟ ସମଗ୍ର ଜଗତ ଉପରେ କର୍ତ୍ତୃତ୍ୱ ଚଳାଇବାକୁ ଚେଷ୍ଟିତ, ଅଥଚ ତାହା ନିକଟରେ କୌଣସି କ୍ଷୁଦ୍ର ଜୀବ ବାସ କରନ୍ତି ବା ନା ସେଇତକ ଦେଖିବାପାଇଁ ଦୃଷ୍ଟିଶକ୍ତି ତାହାର ନାହିଁ ।)

ନିଜ ଦୃଷ୍ଟିଶକ୍ତିର ଏହି ହୀନତା ଦୂର କରିବା ନିମିତ୍ତ ମାନବ ବହୁଦିନୁ ପ୍ରାଣପଣେ ଚେଷ୍ଟା କରି ଆସୁଅଛି । ଏହି ପ୍ରୟାସଫଳରେ ଅନେକ ନୂତନ ସୃଷ୍ଟିର ସନ୍ଧାନ ପାଇଅଛି । ଆଜି ମନୁଷ୍ୟ ଏକ ଦିଗରେ ଯେପରି ଦୂରବୀକ୍ଷଣ ଯନ୍ତ୍ର (telescope) ଉଦ୍ଭାବନ କରି ଅଗଣ୍ୟ ଗ୍ରହନକ୍ଷତ୍ରାଦିର ସନ୍ଧାନ ପାଇଅଛି, ବହୁଦୂରରେ ଅବସ୍ଥିତ ପ୍ରାୟ ଅଦୃଶ୍ୟ ବସ୍ତୁର ଯଥାର୍ଥ ରୂପ ଦେଖି ପାରୁଅଛି—ଅନ୍ୟ ଦିଗରେ ସେପରି ଅଣୁବୀକ୍ଷଣ ଯନ୍ତ୍ର (microscope) ଉଦ୍ଭାବନ କରି ଅତି କ୍ଷୁଦ୍ର ଅଣୁ ପରମାଣୁ ଲକ୍ଷ୍ୟମତ ପରୀକ୍ଷା କରୁଅଛି ।

ଏହି ଅଣୁବୀକ୍ଷଣ ଯନ୍ତ୍ରହିଁ ଆଧୁନିକ ଚିକିତ୍ସାଶାସ୍ତ୍ର ସକଳ ଉନ୍ନତିର ମୂଳ । ଅଣୁବୀକ୍ଷଣ ଯନ୍ତ୍ର ନଥିଲେ ଆମ୍ଭମାନଙ୍କ ଶରୀରର କାର୍ଯ୍ୟପ୍ରଣାଳୀର କୌଣସି ବିଷୟ ଯେପରି ଜଣା ଯାଉନ୍ତା ନାହିଁ, ରୋଗ ହେଲେ ତାହାର ସଠିକ ନିର୍ଣ୍ଣୟ ମଧ୍ୟ ସେପରି ଏତେ ସହଜ ହୁଅନ୍ତା ନାହିଁ ।

ଅଣୁବୀକ୍ଷଣ ଓ ଦୂରବୀକ୍ଷଣ ଯନ୍ତ୍ର ଭିନ୍ନ ଆଉ ଗୋଟିଏ ଅଦ୍ଭୁତ ଯନ୍ତ୍ର ମନୁଷ୍ୟର ଦୃଷ୍ଟିଶକ୍ତିର ପରିଧିକୁ ଆଶାତୀତରୂପେ ବର୍ଦ୍ଧନ କରିଅଛି । ତାହାର ନାମ 'ଏକ୍ସ୍-ରେ' (X'ray) । ଏହି ବିଚିତ୍ର ବସ୍ତୁଟି ଏକ ପ୍ରକାର ବୈଦ୍ୟୁତିକ ଆଲୋକ-ରଶ୍ମି । ଏହା ପ୍ରକୃତ କି ଜିନିଷ, ତାହା କେହି ଜାଣନ୍ତି ନାହିଁ । ଏହି ଅଦ୍ଭୁତ ଆଲୋକର ଏପରି ଗୁଣ ଯେ, ଏହା କାଠ, କାଗଜ, ତୁଳା, ଦେହର ମାଂସ ପ୍ରଭୃତି ଅଧିକାଂଶ ପଦାର୍ଥ ଭେଦ କରିଯାଏ ।

କେବଳ ସୁନା, ରୁପା, ତମ୍ବା ଇତ୍ୟାଦି ଧାତୁନିର୍ମିତ ଦ୍ରବ୍ୟ ଏବଂ ଶରୀରର ଅସ୍ଥି ଇତ୍ୟାଦି କୌଣସି ଜିନିଷ ଭେଦ କରି ପାରେ ନାହିଁ ।

ମନେ କର, ତୁମେ କେତୋଟି ଟଙ୍କା ପଇସା ଗୋଟିଏ ଛୋଟ କାଠ ବାକ୍ସରେ ଭରତି କରି ରଖିଅଛ । ଦିନବେଳେ ବାକ୍ସର ଢାଙ୍କୁଣି ନଖୋଲି ତୁମେ କହି ପାରିବ, ତୁମ ବାକ୍ସରେ ଟଙ୍କା, ପଇସା ଅଛି କି ନା । କାରଣ ସୂର୍ଯ୍ୟାଲୋକ ଅନାୟାସରେ କାଠ ବାକ୍ସ ଭେଦ କରି ଯାଇ ଟଙ୍କା, ପଇସା ଉପରେ ପଡ଼େ; କିନ୍ତୁ ଟଙ୍କା ପଇସା ଭେଦ କରି ଯାଇ ପାରେ ନାହିଁ । "ଏକ୍ସ-ରେ" ମଧ୍ୟ ସେହିପରି କାଷ୍ଠ ପ୍ରଭୃତି ପଦାର୍ଥ ଭେଦ କରି ଅତି ସହଜରେ ଯାଏ, କିନ୍ତୁ ଧାତୁ ପ୍ରଭୃତି ଦ୍ରବ୍ୟ ଭେଦ କରି ଯାଇ ପାରେ ନାହିଁ । କାଠ ବାକ୍ସରେ ସୁନାରୁପାର ଗହଣା ଇତ୍ୟାଦି ଥିଲେ ଏହି ଏକ୍ସ-ରେ ସାହାଯ୍ୟରେ ବାହାରରୁ ଅନାୟାସରେ ଦେଖା ଯାଇପାରେ । ସେହିପରି ମନୁଷ୍ୟ ଶରୀର ଭିତରେ ମଧ୍ୟ କେଉଁଖଣ୍ଡି ହାଡ଼ କେଉଁ ଭାଗରେ କିପରି ଭାବରେ ଅଛି, ତାହା ଏହି ଏକସ-ରେ ଯନ୍ତ୍ର ସାହାଯ୍ୟରେ ବିନା ଅସ୍ତ୍ର ପ୍ରୟୋଗରେ ବାହାରୁ ଅକ୍ଳେଶରେ ଦେଖାଯାଇ ପାରେ ।

ଏହି ଯନ୍ତ୍ରର ଉଦ୍ଭାବନରେ ମନୁଷ୍ୟର ଯେ କେତେ ସୁବିଧା ହୋଇ-ଅଛି ତାହା କହି ଶେଷ କରିଯାଇ ପାରିବ ନାହିଁ । ପ୍ରାସାଦ ବା ପାହାଡ଼ ଉପରୁ ପଡ଼ି କାହାର ଅସ୍ଥି ଭାଙ୍ଗି ଯାଇଛି । ଏକ୍ସ-ରେ ଦ୍ୱାରା ପରୀକ୍ଷା କରି ଦେଖି ଜଣାଯାଇ ପାରିବ ଯେ, କେଉଁ ହାଡ଼ ଖଣ୍ଡିକ ଦେହର କେଉଁ ଭାଗରେ ଭାଙ୍ଗି ଯାଇଛି । ସେଥିପାଇଁ ଦେହ ଚିରି ଫୋଡ଼ି ସାଠିଏ ଜାଗା ଦେଖିବା ଆବଶ୍ୟକ ନାହିଁ । କୌଣସି ବାଳକ ବା ବାଳିକା ହୁଏତ ଖେଳୁ ଖେଳୁ ଗୋଟିଏ ପଇସା ଗିଳି ପକାଇଛି—କଣ୍ଠ ମଧ୍ୟରୁ କିଛି ଦୂର ଯାଇ ପଇସାଟି ଅଟକି ରହିଛି, ବାହାରକୁ ଆସୁନାହିଁ, ତଳକୁ ବି ଖସୁ ନାହିଁ,

ଅଥଚ ପଇସାଟି କଣ୍ଠନାଳୀର କେଉଁ ଜାଗାରେ ଅଟକି ରହିଛି, ତାହା ବାହାରୁ ଦେଖାଯାଉ ନାହିଁ । ସେତେବେଳେ ଏକ୍‌ସ-ରେ ସାହାଯ୍ୟରେ ଅତି ସହଜରେ ଦେଖା ଯାଇ ପାରିବ, ପଇସାଟି ଯେଉଁ ଜାଗାରେ ଅଟକି ଯାଇଛି—ପରେ ଯନ୍ତ୍ର ପ୍ରଭୃତିଦ୍ୱାରା ତାହା ବାହାର କରାଯାଇ ପାରେ । "ଏକ୍‌ସ-ରେ" ବୈଦ୍ୟୁତିକ ଆଲୋକର ଉଦ୍ଭାବନଦ୍ୱାରା ନିଜ ଦୃଷ୍ଟିଶକ୍ତି ପ୍ରସାର କରି ପାରିବ ଯେ ଚିକିତ୍ସା-ବିଜ୍ଞାନର କି ଉନ୍ନତି ସାଧନ କରିଛି, ତାହା ଲେଖି ବା କହି ଶେଷ କରାଯାଇ ପାରିବ ନାହିଁ ।



## ପ୍ରକୃତ ଶିକ୍ଷା

"ଶରୀରମାଦ୍ୟଂ ଖଳୁ ଧର୍ମ-ସାଧନମ୍‌" । ଏହା ଅକ୍ଷରେ ଅକ୍ଷରେ ସତ୍ୟ । ଶରୀର ଭଲ ନ ରହିଲେ, ମନ ଭଲ ରହେ ନାହିଁ ଏବଂ ମନୁଷ୍ୟ କୌଣସି କାର୍ଯ୍ୟ ଉତ୍ତମରୂପେ କରିବାକୁ ସମର୍ଥ ହୁଏ ନାହିଁ । ଶରୀରହିଁ ଧର୍ମ-ସାଧନର ଆଦ୍ୟ ଉପାୟ । ଅତଏବ ଶାରୀରିକ ଶିକ୍ଷା ଅତି ପ୍ରୟୋଜନୀୟ । ଶାରୀରିକଶିକ୍ଷାର ଅର୍ଥ କେବଳ ବ୍ୟାୟାମ ନୁହେ, ଉପଯୁକ୍ତ ଆହାର ଗ୍ରହଣ, ଉପଯୁକ୍ତ ପରିଚ୍ଛଦ ପରିଧାନ, ଯଥାଯୋଗ୍ୟ ବ୍ୟାୟାମ ଅଭ୍ୟାସ, ଆବଶ୍ୟକ-ମତ ବିଶ୍ରାମ ଗ୍ରହଣ, ଯଥାସମୟରେ ନିଦ୍ରା ପ୍ରଭୃତି ଯେଉଁ ସକଳ କାର୍ଯ୍ୟଦ୍ୱାରା ଶରୀରର ସ୍ୱାସ୍ଥ୍ୟରକ୍ଷା ଓ ପୁଷ୍ଟିବର୍ଦ୍ଧନ ହୁଏ ଏବଂ ସଙ୍ଗେ ସଙ୍ଗେ ମାନସିକ ଉତ୍କର୍ଷଲାଭରେ ମଧ୍ୟ ବିଘ୍ନ ନହୋଇ ବରଂ ସହାୟ ହୁଏ ତତ୍ସମୁଦାୟ ଅନୁଷ୍ଠାନକୁ ଶାରୀରିକ ଶିକ୍ଷା କୁହାଯାଏ ।

ଅନେକ ମନେ କରି ପାରନ୍ତି, ଜ୍ଞାନଲାଭ ନିମିତ୍ତ ଏତେ ଶାରୀରିକ ନିୟମ ପାଳନର ପ୍ରୟୋଜନ ନାହିଁ । ଯେତେବେଳେଯାଏ ଶରୀର ନିତାନ୍ତ

ଅସୁସ୍ଥ ହେବେ ନାହିଁ, ବୁଦ୍ଧି ଥିଲେ ସେହି ସମସ୍ତ ପର୍ଯ୍ୟନ୍ତ ଜ୍ଞାନଲାଭର କୌଣସି ବାଧା ହେବ ନାହିଁ । କିନ୍ତୁ ଏହା ଭାବିବା ଭ୍ରମ ମାତ୍ର । ଅସାଧାରଣ ବୁଦ୍ଧିମାନ୍ ଓ ମେଧାବୀ ପକ୍ଷରେ ଶରୀରର ଅବସ୍ଥା ଭଲ ନରହିଲେହେଁ ଜ୍ଞାନାର୍ଜ୍ଜନରେ ସେତେକ କଷ୍ଟ ବିଘ୍ନ ଘଟି ନପାରେ, କିନ୍ତୁ ସାଧାରଣଲୋକ ପକ୍ଷରେ ନିଶ୍ଚୟ ବିଘ୍ନ ଘଟିବ । ଆହାର ଓ ବ୍ୟାୟାମ, ନିଦ୍ରା ଓ ବିଶ୍ରାମ, ଯଥାନିୟମରେ ଚଳିଲେ ସେମାନଙ୍କ ଶରୀର ଓ ମନର ଅବସ୍ଥା ଜ୍ଞାନାର୍ଜ୍ଜନର ଉପଯୋଗୀ ହେବ । ସ୍ଥୂଳରେ କହିବାକୁ ଗଲେ, ବ୍ରହ୍ମଚର୍ଯ୍ୟ ପାଳନ ଓ ଆହାର-ନିଦ୍ରାର ସଂଯମ ଶିକ୍ଷାର୍ଥୀ ପକ୍ଷରେ ପ୍ରଶସ୍ତ ନିୟମ ।

ସହଜ ଅବସ୍ଥାରେ ଶାରୀରିକ ନିୟମ ଲଙ୍ଘନ କେତେକ ପରିମାଣରେ ସହ୍ୟ ହୁଏ ଏବଂ ସହଜ କାର୍ଯ୍ୟ ଶାରୀରିକ ଶିକ୍ଷା ବିନା ଏକ ରକମ ଚଳେ, କିନ୍ତୁ ତାହା ବୋଲି ଶାରୀରିକ ନିୟମ ପାଳନ ଓ ଶାରୀରିକ ଶିକ୍ଷା ଅନାବଶ୍ୟକ କହାଯାଏ ନାହିଁ । ନିୟମିତ ଆହାର, ବ୍ୟାୟାମ ଓ ବିଶ୍ରାମଦ୍ୱାରା ଅନେକ ଦୁର୍ବଳ ଦେହ ସବଳ ହୋଇ ଉଠେ । ହସ୍ତ ଓ ଚକ୍ଷୁର ସୁଶିକ୍ଷାଦ୍ୱାରା ଲୋକେ ଚିତ୍ରକରଣରେ ଆଶ୍ଚର୍ଯ୍ୟ ନୈପୁଣ୍ୟ ଲାଭ କରିଥାନ୍ତି । ପକ୍ଷାନ୍ତରରେ ଶିକ୍ଷା ନକଲେ ଚିତ୍ର ଅଙ୍କନ କରିବା ଦୂରେ ଥାଉ, ଗୋଟିଏ ଦୀର୍ଘ ସରଳରେଖା ମଧ୍ୟ ଟାଣି ପାରିବେ ନାହିଁ ।

ମନ ଯେପରି ଶରୀର ଅପେକ୍ଷା ସୂକ୍ଷ୍ମତର ପଦାର୍ଥ, ମାନସିକ ଶିକ୍ଷା ମଧ୍ୟ ସେହିପରି ଶାରୀରିକ ଶିକ୍ଷା ଅପେକ୍ଷା କଠିନତର ବିଷୟ । ଏହି ସ୍ଥଳରେ ମାନସିକ ଶିକ୍ଷା, ବିଦ୍ୟାଶିକ୍ଷା ବୋଇଲେ ଯାହା ବୁଝାଯାଏ ସେହି ଅର୍ଥରେ ବ୍ୟବହୃତ ହୋଇ ନାହିଁ । ଭିନ୍ନ ଭିନ୍ନ ବିଦ୍ୟାଶିକ୍ଷା ଜଗତର ଭିନ୍ନ ଭିନ୍ନ ବିଷୟରେ ଜ୍ଞାନଲାଭକୁ ବୁଝାଏ; କିନ୍ତୁ ମାନସିକ ଶିକ୍ଷା କହିଲେ ତଦତିରିକ୍ତ ଅଧିକ କିଛି ବୁଝାଏ; ଅର୍ଥାତ୍ ଜ୍ଞାନଲାଭ ଏବଂ ଜ୍ଞାନଲାଭର ଶକ୍ତିବର୍ଦ୍ଧନ— ଏ ଉଭୟ ବୁଝାଯାଏ । ଉପଯୁକ୍ତ ବିଶେଷ ବିଶେଷ ବିଦ୍ୟା ଶିଖିବାକୁ ଗଲେ

ସଙ୍ଗେ ସଙ୍ଗେ ଅବଶ୍ୟ ମାନସିକ ଶିକ୍ଷା ଲାଭ ହୁଏ; ଯଥା—ଦର୍ଶନ ବା ଗଣିତ ଶିକ୍ଷା ସଙ୍ଗେ ସଙ୍ଗେ ବୁଦ୍ଧିର ବିକାଶ ହୋଇଥାଏ, ଇତିହାସ ଶିକ୍ଷା କରିବାକୁ ଗଲେ ଅଭ୍ୟାସଦ୍ୱାରା ସ୍ମୃତିଶକ୍ତିର ବୃଦ୍ଧି ହୁଏ । ତଥାପି ଭିନ୍ନ ଭିନ୍ନ ବିଦ୍ୟାଶିକ୍ଷା ସଙ୍ଗେ ସଙ୍ଗେ ମାନସିକ ଶିକ୍ଷା ପ୍ରତି ପୃଥକ୍ ଦୃଷ୍ଟି ରଖିବା ନିତାନ୍ତ ଆବଶ୍ୟକ । କାରଣ,ଯଦ୍ୟପି ଅନେକ ସମୟରେ ମାନସିକ ଶକ୍ତିର ବୃଦ୍ଧି କରେ, ତଥାପି କେବେ କେବେ ତାହା ତଦ୍ବିପରୀତ ଫଳ ଉତ୍ପାଦନ କରେ । ନିରବଚ୍ଛିନ୍ନ ଏକ ବିଦ୍ୟା ଆଲୋଚନାଦ୍ୱାରା ସେହି ବିଦ୍ୟାରେ ପାରଦର୍ଶିତା ଲାଭ ହୋଇ ପାରିଲେ ସୁଦ୍ଧା ତଦ୍ୱାରା ସାଧାରଣ ମାନସିକ ଶକ୍ତିର ବୃଦ୍ଧି ନହୋଇ ବରଂ ହ୍ରାସ ହୋଇଯାଏ ଏବଂ ଏଭଳି 'ପଣ୍ଡିତ-ମୂର୍ଖ' ନାମରେ ଯେଉଁ ଏକ ଶ୍ରେଣୀର ବିଚିତ୍ର ଲୋକେ ଅଛନ୍ତି, ସେମାନଙ୍କର ସୃଷ୍ଟି ହୁଏ । ବିଦ୍ୟାଶିକ୍ଷା କରି ସୁଦ୍ଧା ଯଦି ମାନସିକ ଶିକ୍ଷା ଅଭାବରେ ଲୋକେ ଏପରି ପରିହାସଭାଜନ ହୋଇ ବସିବେ, ତାହା ହେଲେ ସେହି ଅତ୍ୟାବଶ୍ୟକ ମାନସିକ ଶିକ୍ଷା କଣ ଏବଂ କିପରି ବା ତାହା ଲାଭ କରାଯାଏ, ଉତ୍ସୁକ ହୋଇ ସମସ୍ତେ ଏହି ପ୍ରଶ୍ନ କରିବେ । ଆଗେ କହାଯାଇଅଛି,ମାନସିକ ଶିକ୍ଷା କେବଳ ବିଷୟ ବିଶେଷର, ଜ୍ଞାନଲାଭ ନୁହେ—ସକଳ ବିଷୟରେ ଜ୍ଞାନଲାଭର ଶକ୍ତିବର୍ଦ୍ଧନ ଏହାର ମୂଳ ଲକ୍ଷଣ । ସେହି ଶକ୍ତିବର୍ଦ୍ଧନର ଉପାୟ, ନାନା ବିଷୟରେ ଯଥାସମ୍ଭବ ଶିକ୍ଷା ଏବଂ ସମସ୍ତ ବିଷୟ ଯଥାସମ୍ଭବ ଆୟତ୍ତ କରିବାର ଅଭ୍ୟାସ । ସମସ୍ତଙ୍କର ସକଳ ବିଷୟ ସମ୍ୟକରୂପେ ଆୟତ୍ତ ହୋଇ ନପାରେ, କିନ୍ତୁ ସକଳ ବିଷୟର ସହଜ କଥା କିଯତ୍ ପରିମାଣରେ ଆୟତ୍ତ କରିବାର ଶକ୍ତି ପ୍ରତ୍ୟେକ ଲୋକର ରହିବା ଉଚିତ ଏବଂ ଚେଷ୍ଟା ଯତ୍ନ କରିବା ମାତ୍ରେ ସେହି ଶକ୍ତିଲାଭ କରାଯାଏ । ବିଦ୍ୟା ଅପେକ୍ଷା ବୁଦ୍ଧି ବଡ଼ । ବିଦ୍ୟା ଅତ୍ୟଳ୍ପ ଥିଲେହେଁ ଚଳିପାରେ, କିନ୍ତୁ ବୁଦ୍ଧି ଅଳ୍ପ ଥିଲେ ଚଳିବା କଠିନ । ପ୍ରକୃତ ମାନସିକ ଶିକ୍ଷା ନହେଲେ, ଜ୍ଞାନ ଲାଭ ସହଜ ହୁଏ ନାହିଁ ।

ଶାରୀରକ ଓ ମାନସିକ ଶିକ୍ଷା ଅପେକ୍ଷା ନୈତିକ ଶିକ୍ଷା ଅଧିକତର ପ୍ରୟୋଜନୀୟ । ଶରୀର ସବଳ ଓ ବୁଦ୍ଧି ତୀକ୍ଷ୍ଣ ହେଲେ ସୁଦ୍ଧା ଯାହାର ନୀତି କଳୁଷିତ, ସେ ନିଜର ଏବଂ ଅପର ସାଧାରଣଙ୍କ ଅମଙ୍ଗଳର କାରଣ ହୋଇଥାଏ ମାତ୍ର । ଶାସ୍ତ୍ରକାର ଯଥାର୍ଥ କହିଛନ୍ତି:—

'ଦୁର୍ଜ୍ଜନଃ ପରିହର୍ତ୍ତବ୍ୟୋ ବିଦ୍ୟୟାଲଙ୍କୃତୋଽପିସନ୍
ମଣିନା ଭୂଷିତଃ ସର୍ପଃ କିମସୌ ନ ଭୟଙ୍କରଃ ।'

ଦୁର୍ଜ୍ଜନ ବିଦ୍ୱାନ୍ ହେଲେହେଁ ପରିତ୍ୟଜ୍ୟ । ମସ୍ତକରେ ମଣି ଅଛି ବୋଲି ସର୍ପ କଣ ଭୟଙ୍କର ନୁହେ ? ନୈତିକ ଶିକ୍ଷା ଯେପରି ଅତି ପ୍ରୟୋଜନୀୟ, ସେପରି ଅତି କଠିନ । ସୁନୀତି କାହାକୁ କହନ୍ତି ଏବଂ ଦୁର୍ନୀତି କାହାକୁ କହନ୍ତି, ତାହା ସ୍ଥିର କରିବା ସହଜ । କିନ୍ତୁ ସେପରି ହେଲେ ମଧ୍ୟ ଯେ ନୈତିକ ଶିକ୍ଷା ଏତେ କଠିନ, ତାହାର କାରଣ ହେଉଛି —ସୁନୀତି କଣ, ଦୁର୍ନୀତି କଣ, ଏହା ଜାଣିବା ମାତ୍ରେ ନୈତିକ ଶିକ୍ଷା-ଲାଭ ସଂପନ୍ନ ହୁଏ ନାହିଁ । କାର୍ଯ୍ୟତଃ ଯାହା ସୁନୀତି ତାହା ଆଚରଣ କରିବା ଏବଂ ଯାହା ଦୁର୍ନୀତି ତାହା ପରିହାର କରିବା ନୈତିକଶିକ୍ଷା ଲାଭର ଲକ୍ଷଣ ଏବଂ ସେହିଳି କାର୍ଯ୍ୟ କରିପାରିବା ବହୁ ଯତ୍ନ ଓ ଅଭ୍ୟାସର ଫଳ । ନୈତିକଶିକ୍ଷା କେବଳ ଜ୍ଞାନସାପେକ୍ଷ ନୁହେ । ପ୍ରଧାନତଃ କର୍ମସାପେକ୍ଷ । ତେବେ ନୈତିକଶିକ୍ଷା ଜ୍ଞାନଲାଭ ନିମିତ୍ତ ଅତି ପ୍ରୟୋଜନୀୟ । ଦୁର୍ଜ୍ଜନ ବିଦ୍ୟାଳଙ୍କୃତ ହୋଇପାରେ, କିନ୍ତୁ ତାହାର ପ୍ରକୃତ ଜ୍ଞାନଲାଭ ପ୍ରାୟ ଘଟେ ନାହିଁ । କାରଣ, ଜ୍ଞାନଲାଭ ନିମିତ୍ତ ଯେଉଁ ପ୍ରକାର ଯତ୍ନ ଓ ଅଭ୍ୟାସ ଆବଶ୍ୟକ, ତଦୁପଯୋଗୀ ମନର ଶାନ୍ତଭାବ ଦୁର୍ନୀତି ବ୍ୟକ୍ତି ମାନଙ୍କର ରହେ ନାହିଁ । ସେମାନେ ତୀକ୍ଷ୍ଣବୁଦ୍ଧି ହୋଇ ପାରନ୍ତି, କିନ୍ତୁ ଧୀର ବୁଦ୍ଧି ହୁଅନ୍ତି ନାହିଁ । ସେମାନେ ଚତୁର କଥା କହି ପାରନ୍ତି, କିନ୍ତୁ କୌଣସି ବିଷୟର ସୂକ୍ଷ୍ମ ଓ ପ୍ରକୃତ ଅର୍ଥ ବୁଝିବାକୁ ଅକ୍ଷମ ହୋଇ

ପଡ଼ନ୍ତି । ସେମାନେ କୁତର୍କ କରି କୁଟିଳ ପଥରେ ଯାଇ ପାରନ୍ତି, କିନ୍ତୁ ସୁଯୁକ୍ତିଦ୍ୱାରା ସରଳ ସିଦ୍ଧାନ୍ତରେ ଉପନୀତ ହୋଇ ପାରନ୍ତି ନାହିଁ । ଯେଉଁଠାରେ କଣ୍ଟା ଦୋଷ ନାହିଁ, ସେଠାରେ ସେମାନେ ଦୋଷ ଦେଖନ୍ତି; ଯେଉଁଠାରେ ପ୍ରକୃତ ଦୋଷ ଅଛି, ସେମାନଙ୍କ ବକ୍ର ଦୃଷ୍ଟି ତାହା ଦେଖିବାକୁ ପାଏ ନାହିଁ । ବୋଧହୁଏ ଏହି କାରଣରୁହିଁ ଅର୍ଯ୍ୟଋଷିଗଣ ଯେ କୌଣସି ଲୋକକୁ ଉପଦେଶ ଦେଉ ନଥିଲେ—ଶିଷ୍ୟ ପ୍ରଥମରେ ନୈତିକଶିକ୍ଷା ପ୍ରାପ୍ତ ନହେଲେ ତାହାକୁ ଜ୍ଞାନଶିକ୍ଷା ଦେଉ ନଥିଲେ । ଅଉ ଗୋଟିଏ କଥା, ଦୁର୍ନୀତ ବ୍ୟକ୍ତିର ଜଡ଼ଜଗତ୍ ସମ୍ବନ୍ଧୀୟ ଜ୍ଞାନବୃଦ୍ଧି ହେଲେ ତଦ୍ଦ୍ୱାରା ସଂସାରର ବହୁ ଅନିଷ୍ଟ ଘଟିପାରେ । ସୁତରାଂ ନୈତିକ ଶିକ୍ଷା ସର୍ବାଗ୍ରେ ଆବଶ୍ୟକ ।

ନୈତିକଶିକ୍ଷା ଅଭାବରେ ଅମ୍ଭମାନଙ୍କ ଅଶେଷ କଷ୍ଟ ବୃଦ୍ଧି ହୁଏ ଏବଂ ନୀତି-ଶିକ୍ଷାଦ୍ୱାରା ବହୁ କଷ୍ଟର ଲାଘବ ହୋଇପାରେ । ନୀତି ଶିକ୍ଷା ସାହାଯ୍ୟରେ ଗ୍ରାସାଚ୍ଛାଦନୋପଯୋଗୀ ଦ୍ରବ୍ୟ ବା ରୋଗୋପଶମକ ଔଷଧ ପ୍ରସ୍ତୁତ କରିବାର କ୍ଷମତା ଜନ୍ମେ ନାହିଁ; ଏଣୁ ତଦ୍ଦ୍ୱାରା ଦାରିଦ୍ର୍ୟ, ରୋଗ, ଅକାଳମୃତ୍ୟୁ ନିବାରିତ ହୁଏ ନାହିଁ ସତ୍ୟ, କିନ୍ତୁ ନୀତି-ଶିକ୍ଷା ଯେ ଆଳସ୍ୟ, ଅପବ୍ୟୟାଦିପ୍ରସୂତ ଦାରିଦ୍ର୍ୟ ଏବଂ ଅତିଭୋଜନ ପ୍ରଭୃତି ଇନ୍ଦ୍ରିୟପରତନ୍ତ୍ରାଦିଜନିତ ରୋଗ ନିବାରଣର ଉପାୟ, ତହିଁରେ ସନ୍ଦେହ ନାହିଁ । ସୁନୀତିସଂପନ୍ନ ଲୋକ ଯଥାସାଧ୍ୟ ଯତ୍ନ କରି ଦାରିଦ୍ର୍ୟ ଓ ରୋଗ-ନିବାରଣରେ ସତତ ତତ୍ପର ରହେ । ପୁଣି ଦାରିଦ୍ର୍ୟ, ରୋଗ, ଅକାଳମୃତ୍ୟୁ, ଦୈବଦୁର୍ଘଟନାଦି ଯେଉଁ ସ୍ଥାନରେ ଅନିବାର୍ଯ୍ୟ ସେଠାରେ ତଜ୍ଜନିତ ଦୁଃଖଭାର ସହିଷ୍ଣୁତା ସହିତ ବହନ କରିବାର କ୍ଷମତା ନୀତି-ଶିକ୍ଷା ବ୍ୟତୀତ ଅନ୍ୟ କୌଣସି ଶିକ୍ଷାରେ ଜନ୍ମେ ନାହିଁ ଏବଂ ସେହି କ୍ଷମତା ଏହି ସୁଖ-ଦୁଃଖମୟ ସଂସାରରେ ଅଳ୍ପ ମୂଲ୍ୟବାନ୍ ସମ୍ପଦ ନୁହେ ।

ଏତଦ୍‌ବ୍ୟତୀତ ବସ୍ତୁତ ଭାବି ଦେଖିଲେ ବୁଝାଯାଇ ପାରେ ଯେ, ଦୈବଦୁର୍ବିପାକାଦି ଅମ୍ଭମାନଙ୍କର ଯେତେଦୂର ଦୁଃଖର ମୂଳ, ଅମ୍ଭମାନଙ୍କର ଦୁର୍ନୀତି ତଦପେକ୍ଷା ସାମାନ୍ୟ ଦୁଃଖର ମୂଳ ନୁହେ । ପ୍ରଥମତଃ, ଅମ୍ଭମାନଙ୍କ ନିଜର ଦୁର୍ନୀତିରେ ନିଜର ଅଶେଷ ଦୁର୍ଗତି ଘଟେ । ଅତିଭୋଜନାଦି ଅସଂଯତ ଇନ୍ଦ୍ରିୟସେବା ଯୋଗୁଁ ଅମ୍ଭମାନଙ୍କୁ ନାନାବିଧ ରୋଗର ଯନ୍ତ୍ରଣା ଭୋଗ କରିବାକୁ ଓ ଅକାଳରେ କାଳଗ୍ରାସରେ ପଡ଼ିବାକୁ ହୁଏ । ଦୁରାକାଂକ୍ଷା, ଅତିଲୋଭ, ଈର୍ଷା, ଦ୍ୱେଷାଦି ଦୁଷ୍ପ୍ରବୃତ୍ତିରୁ ଅମ୍ଭେମାନେ ନିରନ୍ତର ତୀବ୍ର ମନୋବେଦନା ସହ୍ୟ କରୁଁ । ଦ୍ୱିତୀୟତଃ, ପରର ଦୁର୍ନୀତି ଯୋଗୁଁ ଅପମାନ, ବଞ୍ଚନା, ଚୌର୍ଯ୍ୟାଦିଦ୍ୱାରା ଅର୍ଥନାଶ, ଶତ୍ରୁ ହସ୍ତରେ ଅଘାତ ଓ ଅପମୃତ୍ୟୁ ଇତ୍ୟାଦି ନାନାପ୍ରକାର ଗୁରୁତର କ୍ଳେଶ ଭୋଗ କରୁଁ । ରାଷ୍ଟ୍ରବିପ୍ଳବ, ଯୁଦ୍ଧ ଓ ସେଥିର ଆନୁଷଙ୍ଗିକ ସମସ୍ତ ଅମଙ୍ଗଳ ମୁଦ୍ଧା ମନୁଷ୍ୟର ଦୁର୍ନୀତିର ଫଳ । ଅତଏବ ଇନ୍ଦ୍ରିୟସଂଯମ ଓ ଦୁଷ୍ପ୍ରବୃତ୍ତିଦମନ ଶିକ୍ଷା ନକଲେ, କେବଳ ବିଜ୍ଞାନ-ଶିକ୍ଷାଦ୍ୱାରା ଭୋଗର ଉପାୟ ଏବଂ ରୋଗର ଔଷଧ ପ୍ରଚୁର ପରିମାଣରେ ପ୍ରସ୍ତୁତ କରିପାରିଲେ ହେଁ ମନୁଷ୍ୟ କେବେ ସୁଖୀ ହୋଇ ନପାରେ ।

---

## ବାଲ୍ୟଶିକ୍ଷା

ଅଧିକ ବୟସରେ ଆମ୍ଭେମାନେ ଅନେକ ଜ୍ଞାନ, ଅନେକ ଉଚ୍ଚକଥା ଶିକ୍ଷା କରୁଁ ସତ୍ୟ, କିନ୍ତୁ ଜୀବନର ପ୍ରାରମ୍ଭରେ ଆମ୍ଭମାନଙ୍କର ପ୍ରକୃତି ଏକପ୍ରକାର ଗଠିତ ହୋଇଥାଏ । ବାଲ୍ୟଶିକ୍ଷାର ପ୍ରଭାବକୁ ପରାଜୟ କରି ନୂତନ ପଥରେ ଜୀବନ ପରିଚାଳିତ କରିବାର ଅତି ଅଳ୍ପ ଲୋକଙ୍କ ଜୀବନରେ ଦେଖାଯାଏ । ଭାଗ୍ୟକ୍ରମେ ଯେଉଁ ବ୍ୟକ୍ତି ଏହି ସମୟରେ ଅନୁକୂଳ ଅବସ୍ଥାରେ ପତିତ ହୁଏ—ସତ୍ ପିତା, ମାତା, ପ୍ରତିବେଶୀ ଓ

ଶିଶର ଯାହା ଭାଗ୍ୟରେ ଘଟନ୍ତି ସେ ବ୍ୟକ୍ତି ଧନ୍ୟ । ମନୁଷ୍ୟସନ୍ତାନ ସ୍ୱଭାବତଃ ଜ୍ଞାନପିପାସୁ । ବିଦ୍ୟାଳୟକୁ ଗଲେ ଯେ ତାହାର ଶିକ୍ଷା ହୁଏ, ପାଞ୍ଚ ବର୍ଷ ବୟସରେ ବିଦ୍ୟାରମ୍ଭ ନହେବା ପର୍ଯ୍ୟନ୍ତ ସେ ଯେ ଚକ୍ଷୁ କର୍ଣ୍ଣ ମୁଦ୍ରିତ କରି ମନର ଦ୍ୱାରରେ ତାଲା ଦେଇ ବସି ରହୁଥାଏ, ଏପରି ନୁହେ । ମନୁଷ୍ୟର ସମୟଜ୍ଞାନ ଓ ପ୍ରକୃତିର ସମୟଜ୍ଞାନ ଏକ ନୁହେ । ମନୁଷ୍ୟ ଭ୍ରାନ୍ତ; ପ୍ରକୃତି ଅଭ୍ରାନ୍ତ; ସେ ଠିକ୍ ସମୟରେ କାର୍ଯ୍ୟ ଆରମ୍ଭ କରେ, ଠିକ୍ ସମୟରେ ଶେଷ କରେ—ଶାସ୍ତ୍ର ବା ଗୁରୁ କାହାରିକୁ ଅପେକ୍ଷା କରେ ନାହିଁ । ସେ ମାତୃଗର୍ଭରୁ ଶିଶୁର ପାଠ ଆରମ୍ଭ କରାଏ, ଶିଶୁ ପ୍ରକୃତି ହସ୍ତରେ ଅନେକ ବିଷୟ ଶିକ୍ଷା କଲା ପରେ ଆମ୍ଭେମାନେ ତାହା ହାତରେ ଖଡ଼ି ଦେଉଁ । ସେ ଯାହାହେଉ, ଯେଉଁମାନେ ପ୍ରକୃତିର ହସ୍ତରେ ଯନ୍ତ୍ର ସ୍ୱରୂପ ହୋଇ ଶିଶୁର ଶିକ୍ଷାର ସହାୟତା କରନ୍ତି, ସେହିମାନେ ପ୍ରକୃତ ଶିକ୍ଷକ । ପ୍ରଚଳିତ ବିଦ୍ୟାଳୟରେ କିପରି ସାହିତ୍ୟ, ଗଣିତ, ବିଜ୍ଞାନ ପ୍ରଭୃତି ସୁଚାରୁରୂପେ ଶିକ୍ଷା ଦିଆଯାଇ ପାରେ, ଆମ୍ଭେମାନେ ସେ ବିଷୟ ଆଲୋଚନା କରିବାକୁ ପ୍ରବୃତ୍ତ ହୋଇ ନାହୁଁ । ବିନା ପୁସ୍ତକରେ ମନୁଷ୍ୟ ଯେଉଁ ଶିକ୍ଷା ଲାଭ କରେ, ତାହାହିଁ ଆମ୍ଭମାନଙ୍କର ଆଲୋଚ୍ୟ ।

ଶିଶୁ ଯେ ମାତାର ମୁଖଅଡ଼କୁ ବିସ୍ମିତ ନେତ୍ରରେ ଅନାଇ ରହୁଥାଏ, ତାହାର ପ୍ରତି କଥାକୁ କର୍ଣ୍ଣ ଡେରି ଶୁଣୁଥାଏ, ତାହା ଅର୍ଥଶୂନ୍ୟ ନୁହେ— ସେ ତଦ୍ୱାରା ଶିକ୍ଷାଲାଭ କରୁଥାଏ । ଏହିପରି ପରିବାର ପରିଜନ ପ୍ରତ୍ୟେକ ବ୍ୟକ୍ତିର ଗତିଚଳଣ, କଥାବାର୍ତ୍ତା ତାହାର ଶିକ୍ଷା ବିଧାନ କରେ । ସେ ଯେପରି ଦେଖେ ଓ ଶୁଣେ ସେହିପରି ଶିଖେ । ମନୁଷ୍ୟ ଜନ୍ମଦ୍ୱାରା ବିଶେଷ ପ୍ରକୃତି ଲାଭ କରିଥାଏ; ଅର୍ଥାତ୍ କେହି ସ୍ୱଭାବତଃ ଶାନ୍ତ ସୁଶୀଳ, କେହି କୋପନସ୍ୱଭାବ, କେହି ସ୍ୱଭାବତଃ ଦୟାଶୀଳ, କେହି ବା ନିଷ୍ଠୁର ଇତ୍ୟାଦି । କିନ୍ତୁ ଦୃଷ୍ଟାନ୍ତଗତ ଶିକ୍ଷା ଏହି ଜନ୍ମଗତ ସ୍ୱଭାବକୁ ବହୁ-

ପରିମାଣରେ ଉତ୍ପାଦିତ କରେ । ଯେଉଁ ବାଳକ ବାଳିକାମାନେ ଗୃହରେ ସର୍ବଦା ଦସ୍ୟୁପ୍ରକୃତି ବ୍ୟବହାର ପ୍ରତ୍ୟକ୍ଷ କରୁଅଛନ୍ତି, ସେମାନେ ନିତାନ୍ତ ସାଧୁ ପ୍ରକୃତିଶୀଳ ଜନ୍ମଗ୍ରହଣ କରିଥିଲେହେଁ, କାଳକ୍ରମେ ସେମାନଙ୍କ ଜୀବନରେ ତାହାର ପ୍ରଭାବ ହ୍ରାସପ୍ରାପ୍ତ ହେବ ଏବଂ ଦସ୍ୟୁବୃତ୍ତି ପ୍ରବଳ ହେବ । ପୁଣି ଗୋଟିଏ ଛୋଟ ବାଳକର ସମକ୍ଷରେ ଅନ୍ୟ ଗୋଟିଏ ବାନରଶିଶୁକୁ ଯନ୍ତ୍ରଣା ପ୍ରଦାନ କର, କାଲି ସେ ତାହାର ଅନୁକରଣରେ ଗୋଟିଏ ମାନବଶିଶୁକୁ ସେହିପରି ଯନ୍ତ୍ରଣା ପ୍ରଦାନ କରିବାକୁ ମନ ବଳାଇବ । ଏହା ଆମ୍ଭମାନଙ୍କର ନିତ୍ୟପ୍ରତ୍ୟକ୍ଷ ବ୍ୟାପାର । ପ୍ରତ୍ୟେକ ବୟସରେ ଏହିପରି ପ୍ରତ୍ୟକ୍ଷରେ ବା ପରୋକ୍ଷରେ ମନୁଷ୍ୟସନ୍ତାନ ଶିକ୍ଷା ଲାଭ କରେ । ଏପରି ଶିକ୍ଷା ଯେ କେବଳ ଶିଶୁମାନେ ଲାଭ କରନ୍ତି, ବୟସ୍କମାନେ କରନ୍ତି ନାହିଁ, ତାହା ନୁହେ । ସହସ୍ର ସହସ୍ର ଅଶିକ୍ଷିତଚରିତ୍ର, 'ଯୁବକଶିଶୁ', 'ବୃଦ୍ଧଶିଶୁ' ଏହିପରି ଅନୁକରଣଦ୍ୱାରା ରସାତଳଗାମୀ ହେଉଅଛନ୍ତି । କିନ୍ତୁ ଶିଶୁ ପକ୍ଷରେ ଏହା ଯେପରି ସ୍ୱାଭାବିକ ଓ ନିଶ୍ଚିତ, ଅନ୍ୟ ପକ୍ଷରେ ସେପରି ନୁହେ ।

ବାଲ୍ୟକାଳରେ ଜିଜ୍ଞାସାବୃତ୍ତି ଓ କୌତୂହଳ ଏ ଦୁଇଟି ଅତ୍ୟନ୍ତ ପ୍ରବଳ ଥାଏ । ସମସ୍ତ ଦିବସ ଗୋଟିଏ ୪ । ୫ ବର୍ଷର ବୁଦ୍ଧିମାନ ବାଳକ ନିକଟରେ ରହ, ସେ ତୁମ୍ଭଙ୍କୁ ସହସ୍ର ପ୍ରକାର ପ୍ରଶ୍ନର ତାଡ଼ନାରେ ଅସ୍ଥିର କରି ପକାଇବ । ତୁମ୍ଭେ ତାହାର ପ୍ରତ୍ୟେକ ପ୍ରଶ୍ନର (ତାହାର ବୋଧଗମ୍ୟ) ଉତ୍ତର ଦେବାକୁ ବାଧ୍ୟ । ଯେବେ ଭ୍ରୂକୁଟି ପ୍ରଦର୍ଶନ ବା ଚପେଟାଘାତ-ଦ୍ୱାରା ତାହାର ମୁଖ ବନ୍ଦ କରିବାକୁ ଚେଷ୍ଟା କର, ତେବେ ସେହି ମୁହୂର୍ତ୍ତରେ ତାହାର ମସ୍ତକଚର୍ଷଣର ବ୍ୟାଘାତ ହେଲା । ଅବଶ୍ୟ ଏ ସଂସାରରେ ଏପରି ଅନେକ ବିଷୟ ଅଛି, ଯାହା ବାଳକ ବାଳିକାମାନଙ୍କୁ କୌଣସି ପ୍ରକାରେ ବୁଝାଇ ଦିଆଯାଇ ନପାରେ । ଆମ୍ଭମାନଙ୍କ ବିବେଚନାରେ ଯାହା ସେମାନଙ୍କୁ ବୁଝାଇବା ଅସମ୍ଭବ ବା ବୁଝାଇଲେ

ଅନିଷ୍ଟର ଆଶଙ୍କା ଅଛି । ଏପରି ବିଷୟ ସେମାନଙ୍କ ନିକଟରେ ଉପସ୍ଥାପିତ କରିବା ଆଦୌ ଯୁକ୍ତି ସଙ୍ଗତ ନୁହେ । ଅନେକ ସମୟରେ ଅଭିଭାବକମାନେ ବଡ଼ ବଡ଼ କଥା ଓ ଗାମ୍ଭୀର୍ଯ୍ୟ ଶିକ୍ଷା ଦେଇ ଶିଶୁମାନଙ୍କୁ ଅକାଳବୃଦ୍ଧରୂପରେ ପରିଣତ କରନ୍ତି । ଯାହା ଶିଶୁର ଉପଯୁକ୍ତ ନୁହେ, ସେ ଯାହାର ମର୍ମ ଗ୍ରହଣ କରିବାକୁ ଅସମର୍ଥ, ଏପରି ବିଷୟ ତାକୁ ଶିକ୍ଷା ଦେବାରେ ଲାଭ କଣ ? ପଞ୍ଚମବର୍ଷୀୟ ଶିଶୁକୁ ବୀଜଗଣିତର ଫର୍ମୁଲା (ସୂତ୍ର) କଣ୍ଠସ୍ଥ କରାଇ କି ଫଳ ? ଦେବତା କାହାକୁ କହନ୍ତି ବୁଝିବା ପୂର୍ବରୁ ଦେବତା ନିକଟରେ ତାହାର ମୁଣ୍ଡ ନୁଆଁଇବାଦ୍ୱାରା କି ଉପକାର ଦର୍ଶିବ ? ଅନେକ କୌତୁକ ପ୍ରିୟ ବ୍ୟକ୍ତି ଆମୋଦ ଉଦ୍ଦେଶ୍ୟରେ ଏହିପରି ଅକାଳ ଶିକ୍ଷା ଦେଇ ପିଲାଗୁଡ଼ାଙ୍କୁ ଅକାଳ କୁଷ୍ମାଣ୍ଡ କରି ପକାନ୍ତି । କୌଣସି ଗୁରୁତର ବିଷୟର ଗୁରୁତ୍ୱ ନବୁଝି ଅଭ୍ୟାସ କଲେ ଆଉ ତାହାର ଗୁରୁତ୍ୱ ଅନୁଭବ କରିବାର ଅବସର ବା ପ୍ରବୃତ୍ତି ଲାଭ କରିବା ସୁକଠିନ ହୋଇ ଉଠେ ।

କ୍ଷୁଦ୍ର ବାଳକ ଯାହା ଦେଖିବ ତାହା କରିବ, ୪ । ୨ ମାସର ଶିଶୁ ଯାହା ପାଏ, ତାହା ମୁଖରେ ଦେଇ ଆନନ୍ଦ ଅନୁଭବ କରେ; ତାହା ମଧ୍ୟରେ ଯେ ବିଷ ଥାଇପାରେ, ଏ ଭାବନା ତାହାର ନଥାଏ । ସେହିପରି ପ୍ରତ୍ୟେକ କାର୍ଯ୍ୟରେ ଇଷ୍ଟାନିଷ୍ଟ ଚିନ୍ତା ନକରି ସେ କୌତୂହଳ ଚରିତାର୍ଥ କରିବାକୁ ପ୍ରବୃତ୍ତ ହୁଏ । କୌଣସି ସ୍ଥାନକୁ ଯିବାକୁ ବା କୌଣସି କାର୍ଯ୍ୟ କରିବାକୁ ନିଷେଧ କଲେ ସେ ଅଧିକ ଆଗ୍ରହ ସହିତ ତାହା କରିବ । ସେ ମନେ କରେ, ଏଥିରେ କିଛି ଅଧିକ ରସ ଅଛି । ଯୁକ୍ତି, ତର୍କ, ଉପଦେଶ ସେତେବେଳେ ତାହାର ପ୍ରାଣରେ କିଛି ଫଳପ୍ରଦାୟକ ହୁଏ ନାହିଁ । ଏପରି ଅବସ୍ଥାରେ କପରି ଯତ୍ନରେ ତାହାକୁ ରକ୍ଷା କରିବା କର୍ତ୍ତବ୍ୟ, ତାହା କାହାରିକୁ ବୁଝାଇ ଦେବାର ପ୍ରୟୋଜନ ନାହିଁ, ଏ ସମ୍ବନ୍ଧରେ ଅଧିକ ବାକ୍ୟବ୍ୟୟ କରିବା ବୃଥା ।

ଆମ୍ଭମାନଙ୍କ ଆଲୋଚ୍ୟ ଶିକ୍ଷାର ଆରମ୍ଭ ଗୃହରେ, ସୁତରାଂ ଗୃହସ୍ଥ କିପରି ବିଶୁଦ୍ଧ ହେବ, ଏକଥା ପ୍ରତ୍ୟେକ ଗୃହସ୍ଥର ପ୍ରଧାନ ଚିନ୍ତାର ବିଷୟ । କିନ୍ତୁ ତାହାର ଲକ୍ଷଣ ତ କିଛି ଦେଖାଯାଏ ନାହିଁ । ବର୍ତ୍ତମାନ ଶିକ୍ଷାର ଅର୍ଥ ବିଦ୍ୟାଳୟକୁ ଯାଇ ପୁସ୍ତକ ଲିଖିତ ବିଷୟମାନ ଗଳାଧଃକରଣ କରିବା ! ଯେ ଯେତେ ଗଳାଧଃକରଣ କରି ପାରିଲା, ତାହାର ଆଦର ଓ ଗୌରବ ସେତେ ଅଧିକ । ବାଳକ ବାଳିକାମାନଙ୍କୁ ଭଲ ଅଳଙ୍କାର ଦିଅ, ଭଲ ବସ୍ତ୍ର ଦିଅ, ଭଲ ଆହାର ଦିଅ, ଆଉ ଘରେ କିଛି ବିଦ୍ୟା ଶିଖାଇବା ପାଇଁ ଜଣେ ଜଣେ ଅଜ୍ଞାତଚରିତ୍ର ବଡ଼ ପାସକରା ମାଷ୍ଟର ରଖି ଦିଅ ! ଏଥିରୁ ବଳି ଆଉ ଅଧିକ ଯତ୍ନ କଣ କରାଯାଇ ପାରେ ? ଯେ ଏତେଦୂର କରିପାରେ, ସେ ତାହାର ପ୍ରଶଂସାର ସୀମା ନାହିଁ । ସନ୍ତାନ କି ଦୃଷ୍ଟାନ୍ତ ଦେଖିଲା, କଣ ଶୁଣିଲା ଏବଂ ତଦ୍ୱାରା ତାହାର ଜୀବନ କିପରି ଗଠିତ ହେଲା ବା କେଉଁ ବିଷୟକୁ ଧାବିତ ହେଉଅଛି, ସେ କଥା କେତେ ଜଣ ଦେଖନ୍ତି ? ଆମ୍ଭମାନଙ୍କ ସମାଜର ମାତାଗୁଡ଼ିକ ତ ସନ୍ତାନଶିକ୍ଷାବିଷୟରେ ଅସାଧାରଣ ପଟୁ । ସେମାନଙ୍କର ସୃଷ୍ଟି ସନ୍ତାନ ଜନ୍ମ କରିବା ପାଇଁ ଏବଂ ତାକୁ ଖୁଆଇ ପିଆଇ ବଢ଼ାଇବା ପାଇଁ; ଆଉ ଅତିଶୀଘ୍ର ଗୋଟିଏ ପୁତ୍ରବଧୂ ବା ଜାମାତାର ଆୟୋଜନ କରିବାପାଇଁ । ଏତିକି ହେଲେ ମାତାର କର୍ତ୍ତବ୍ୟ ସରିଲା ।

ଏତିକରେ ଯେବେ ଶେଷ ହୁଅନ୍ତା ତେବେ ତ ଅନେକ ପରିମାଣରେ ରକ୍ଷା ଥାନ୍ତା । କିନ୍ତୁ ତା ଅସମ୍ଭବ ! ବାହାରକୁ ଯିବା ପୂର୍ବରୁ ସନ୍ତାନମାନେ ଗୃହରୁ ସଂସାରର କୁନୀତି ଓ କୁକଥା ମଧ୍ୟରୁ ଅଧିକାଂଶ ଶିଖି ରଖିଥାନ୍ତି । ବର୍ତ୍ତମାନ ଏ ଦେଶର ଗୃହଗୁଡ଼ିକ କି ଅପୂର୍ବ ପଦାର୍ଥ, ତାହା ବର୍ଣ୍ଣନ କରିବା ଦୁଃସାଧ୍ୟ । ଅନ୍ୟାନ୍ୟ କାର୍ଯ୍ୟ ଗୋପନରେ କରିବାକୁ ହୁଏ, ଏ ଶିକ୍ଷା ଗୃହରେ ଯେପରି ସୁନ୍ଦରରୂପେ ହୁଏ, ଅନ୍ୟତ୍ର ସେପରି ହୁଏ

ନାହିଁ । ସନ୍ତାନ ସମ୍ମୁଖରେ ଦେଖୁଅଛୁ, ମାତା ପିତାଙ୍କ ଲୁଚିର ଗୋଟିଏ କାର୍ଯ୍ୟ କରୁଅଛୁ ଏବଂ ଦୈବାତ୍ ତାହା ଧରା ପଡ଼ିଲେ ତାହା ଉଡ଼ାଇ ଦେବାପାଇଁ ନାନା କୌଶଳ ଉଦ୍ଭାବନ କରୁଅଛୁ । ଏହିପରି ଗୃହ ମଧ୍ୟରେ ଜଣେ ଅନ୍ୟ ଜଣକୁ ଲୁଚିର ଗୋଟିଏ କାର୍ଯ୍ୟ କଲେ ଏବଂ ଆବଶ୍ୟକ ହେଲେ ସତର୍କତା ମିଛ କଥା କହି ଆପଣାର ନିର୍ଦ୍ଦୋଷତା ପ୍ରମାଣ କଲେ । ଅନେକ ସ୍ଥଳରେ ଅଭିଭାବକମାନେ ପ୍ରତ୍ୟକ୍ଷ ଭାବରେ ବାଳକବାଳିକାଙ୍କୁ ମିଥ୍ୟା କହିବାକୁ ଶିକ୍ଷା ଦେବାରେ ତ୍ରୁଟି କରନ୍ତି ନାହିଁ । ପୁଣି ମାମଲା, ମୋକଦମା, ବିବାଦ, କଳହରେ ଯେପରି ଭୟଙ୍କର ଜାଲ, ଜୁଆଚୋରିର କାରବାର, ତାହା ତ ସନ୍ତାନ ଶିକ୍ଷାର ଅମୂଲ୍ୟ ଓ ଅମୋଘ ଉପାୟ । ଏ ତ ଗଲା ଶିକ୍ଷିତ ଅଶିକ୍ଷିତ ସାଧାରଣ ଗୃହର କଥା । କେତେ ସଭ୍ୟତାପ୍ରାପ୍ତ ଗୃହର କାରବାର ଅଦ୍ଭୁତ ବଟେ । ୭ । ୮ ବର୍ଷ ବୟସ୍କ ବାଳକ ମଦ୍ୟପାନ କରିଥିବାର ଦୃଷ୍ଟାନ୍ତ ଆମ୍ଭେମାନେ କେତେଗୋଟି ଦେଖିଅଛୁଁ । ଅଧିକ କହିବା ନିଷ୍ପ୍ରୟୋଜନ । ସେମାନେ ମଦ୍ୟପାନ କରିବାକୁ କାହୁଁ ଶିଖିଲେ ? କାହୁଁ ବା ମଦ୍ୟ ପାଇଲେ ? ଏହାର କି ଉତ୍ତର ଆମ୍ଭମାନଙ୍କୁ ଦେବାକୁ ହେବ ?

ଏଥି ଉପରେ ଆମୋଦ ପ୍ରମୋଦର ଲୀଳା, ନୃତ୍ୟ ଗୀତର ଆନନ୍ଦ । ଏଥି ସମ୍ବନ୍ଧରେ ଆମ୍ଭେମାନେ ବାରମ୍ବାର କହିଅଛୁଁ, ବର୍ତ୍ତମାନ ମଧ୍ୟ କହୁଅଛୁଁ ଯେ, ବେଶ୍ୟା ନୃତ୍ୟ ନହେଲେ ଆମୋଦ ଉତ୍ସବ, ମଙ୍ଗଳ କାର୍ଯ୍ୟ, ଧର୍ମାନୁଷ୍ଠାନ ସବୁ ନିଷ୍ଫଳ । ଏହା ମଧ୍ୟ ସନ୍ତାନ ସନ୍ତତିମାନଙ୍କ ଶିକ୍ଷାର ଗୋଟିଏ ଉତ୍କୃଷ୍ଟ ଉପାୟ । ରାଜଧାନୀରେ ଆଦର୍ଶ ରଙ୍ଗଭୂମିମାନ ସ୍ଥାପିତ ହୋଇଅଛି, କ୍ରମେ ତାହା ଦେଶମଧ୍ୟ ବ୍ୟାପ୍ତ ହୋଇ ପରମ ମଙ୍ଗଳ ଓ ଉନ୍ନତି ସାଧନ କରିବ ।

ଅଉ ଗୋଟିଏ ଉପାୟ, ଅମ୍ଭମାନଙ୍କ ଦେଶରେ ଭାଷାର ଅମୂଲ୍ୟ ବ୍ୟବହାର । ଏପରି ଭାଷାର ଅପବ୍ୟବହାର ଅନ୍ୟ କୌଣସି ଦେଶରେ ଅଛି କି ନାହିଁ ସନ୍ଦେହ । ବାଲ୍ୟଶିକ୍ଷା ସଙ୍ଗେ ସଙ୍ଗେ ବାଳକ ବାଳକା ମାନଙ୍କର ନାନା କୁଭାଷା ଶିକ୍ଷା ଆରମ୍ଭ ହୁଏ । କେହି ଗାଳି ଦେଇ ଦକ୍ଷପଦ ଶିକ୍ଷା ଦେଇ ଯାଉଛି । କେହି ବା ଆଦର କରି କେତେ ନୂତନ ନୂତନ ଦେବଭାଷା (?) ଶିକ୍ଷା ଦେଉଅଛି ! ଗୃହର ପୁରୁଷ-ରମଣୀମାନେ ପରସ୍ପର କଳହରେ ପ୍ରବୃତ୍ତ ହେଲେ ବାଳକବାଳିକା-ମାନଙ୍କର ଭାଷାଶିକ୍ଷାର ଦ୍ୱାର ପୂର୍ଣ୍ଣମାତ୍ରାରେ ଫିଟିଯାଏ । ଏହିପରି ନାନା ଉପାୟରେ କଦର୍ଯ୍ୟକଥାର ଅର୍ଥ ନ ବୁଝି ବାଲ୍ୟକାଳରୁ ଶିକ୍ଷା ହୁଏ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଅର୍ଥବୋଧ ହେଲେ ଅନେକ କଥା କାର୍ଯ୍ୟରେ ପରିଣତ ହୁଏ । ଅଉ ବାଲ୍ୟୋପାର୍ଜ୍ଜିତ ସେହି ସବୁ କୁକଥାମାନ ଚରିତ୍ରବନ ରସନାର ଭୂଷଣସ୍ୱରୂପ ହୋଇ ରହେ । ଏ ବିଷୟରେ ଉଚ୍ଚଜାତି ନୀଚ ଜାତିର ପ୍ରଭେଦ ନାହିଁ । ବରଂ ଦରିଦ୍ର ନୀଚଜାତିମାନଙ୍କ ରସନା ଉଚ୍ଚ ଜାତିର ଉପରେ ଅନେକ ସମସ୍ତରେ ସଂଯତ । ହା ଧିକ୍ ! ଏହା କି ଆର୍ଯ୍ୟ ଜାତିର ଉପଯୁକ୍ତ ବ୍ୟବହାର ଓ ଉପଯୁକ୍ତ ଭାଷା ?

ଭାଷା ଓ ଭାବ ଏକତ୍ର ଅବସ୍ଥାନ କରନ୍ତି—ପ୍ରତ୍ୟେକ କଥା କହିବାବେଳେ ବା ଶୁଣିବାବେଳେ ଅବଶ୍ୟ ଅମ୍ଭମାନଙ୍କ ମନରେ ଗୋଟିଏ ଭାବ ଜାତହୁଏ । ବାରମ୍ବାର ଆବୃତ୍ତିଦ୍ୱାରା ସେହି ଭାବ ମନରେ ଦୃଢ଼ରୂପେ ମୁଦ୍ରିତ ହୁଏ । ଏହିପରି ଅପରିଣତାବସ୍ଥାରେ ନାନାପ୍ରକାର କଦର୍ଯ୍ୟ କଥା ଶୁଣିଲେ ବା ଉଚ୍ଚାରଣ କଲେ ମନ କଳୁଷିତ ହୁଏ, କୁଭାବମାନ ମନ ସମକ୍ଷରେ ଉପସ୍ଥିତ ହୋଇ ତାହାକୁ ବିକାରଗ୍ରସ୍ତ କରେ । ଦୃଷ୍ଟାନ୍ତ-ଦ୍ୱାରା ବୁଝାଇବାର ଉପାୟ ନାହିଁ । ସର୍ବତ୍ର ବ୍ୟବହୃତ କଦର୍ଯ୍ୟ କଥାମାନଙ୍କରୁ ଗୋଟିଏ ଧରି ବିଚାର କଲେ, ଅମ୍ଭମାନଙ୍କ ଉକ୍ତିର ସାରବତ୍ତା ସହଜରେ ଉପଲବ୍ଧ ହେବ ।

ସେ କଥା ଥାଉ । ମନୁଷ୍ୟ ଲୁଗା ପିନ୍ଧେ କାହିଁକି ? ସ୍ୱାଭାବିକ ଲଜ୍ଜାଶୀଳତା ମନୁଷ୍ୟ ଜୀବନର ଗୋଟିଏ ଶ୍ରେଷ୍ଠ ଭୂଷଣ । ଯାହାର ଲଜ୍ଜା ନାହିଁ, ସେ ସର୍ବଦା ଅବଜ୍ଞାର ପାତ୍ର । ପ୍ରକୃତିସ୍ଥ ମନୁଷ୍ୟ ତାହାର କୌଣସି ଲଜ୍ଜାଶୂନ୍ୟ ଆଚରଣ ଦେଖିଲେ ଦ୍ୱିତୀୟବାର ତେଣିକି ମୁହଁ ଟେକି ଅନାଇ ପାରନ୍ତି ନାହିଁ । କିନ୍ତୁ ମନୁଷ୍ୟ ପ୍ରକୃତିର ଗୋଟିଏ ନିୟମ ଏହି ଯେ, କୌଣସି ବିଷୟ ଯେତେ ଅରୁଚିକର ହେଉ ପଛକେ ବାରମ୍ବାର ନିକଟସ୍ଥ ହେଲେ ତାହା ଅନେକ ପରିମାଣରେ ସହ୍ୟ ହୋଇଯାଏ । ଉକ୍ତ କାର୍ଯ୍ୟ ପ୍ରତି ହୃଦୟର ସ୍ୱାଭାବିକ ଘୃଣା ଆଉ ରହେ ନାହିଁ । ଏକ ସମୟରେ ମନୁଷ୍ୟ ବନ୍ୟପଶୁ ଭଳି ନଗ୍ନାବସ୍ଥାରେ କାଳ କଟାଉଥିଲା । କ୍ରମେ ଜ୍ଞାନ ଓ ସଭ୍ୟତାର ବୃଦ୍ଧି ସହ ଲଜ୍ଜା ସମ୍ଭ୍ରମ ପ୍ରଭୃତି ମନୁଷ୍ୟୋଚିତ ଭାବଗୁଡ଼ିକ ପରିସ୍ଫୁଟ ହେଲା । ଖ୍ରୀଷ୍ଟିୟାନ ଧର୍ମଶାସ୍ତ୍ର ବାଇବେଲ କହେ, ଆଦି ନରନାରୀ ଆଦମ ଓ ଇଭ ନିଷିଦ୍ଧ ଜ୍ଞାନବୃକ୍ଷର ଫଳ ଭକ୍ଷଣ କରି ସମସ୍ତ ମାନବ ଜାତିକୁ ଶାପଗ୍ରସ୍ତ କଲେ । ସେହି ଦିନୁ ମନୁଷ୍ୟ ସନ୍ତାନର ଅଧଃପତନ ହେଲା । ଆମ୍ଭେମାନେ କହୁଁ, ସେହି ଦିନୁ ମନୁଷ୍ୟଜାତିର ଉନ୍ନତିର ସୂତ୍ରପାତ ହେଲା । ତଦ୍‌ଭବରେ ମନୁଷ୍ୟ ଅଜ୍ଞପର୍ଯ୍ୟନ୍ତ ବନ୍ୟପଶୁ ମାତ୍ର ଥାନ୍ତା । ଏହି ଲଜ୍ଜା ମନୁଷ୍ୟଙ୍କୁ ବସ୍ତ୍ର ପିନ୍ଧାଇ ଅଛି । ଯେଉଁ ସମାଜରେ ଯେତେ ସଭ୍ୟତାର ବିକାଶ, ସେ ସମାଜରେ ସେତେ ଅଧିକ ବସ୍ତ୍ରର ଦରକାର । ଇଉରୋପୀୟ ସମାଜରେ ସର୍ବାଙ୍ଗ ସୁନ୍ଦର ରୂପେ ଆବୃତ ନହେଲେ କାହାରି ନିକଟରେ ଉପସ୍ଥିତ ହେବା ଘୋର ବର୍ବରତା । କିନ୍ତୁ ଆମ୍ଭେମାନେ ଅର୍ଦ୍ଧ ନଗ୍ନାବସ୍ଥାରେ ଯଥା ତଥା ନିର୍ବିବାଦରେ ବିଚରଣ କରୁଁ । ଏହି କେତେକ ବର୍ଷ ମଧ୍ୟରେ ଇଂରାଜୀ ଶିକ୍ଷିତମଣ୍ଡଳୀ ମଧ୍ୟରେ ଏ ବିଷୟରେ ମଧ୍ୟ ଅନେକ ପରିବର୍ତ୍ତନ ସଂଘଟିତ ହୋଇଛି । ଅବଶ୍ୟ ଆମ୍ଭମାନଙ୍କ ସମାଜ ସର୍ବାଂଶରେ ଇଉରୋପୀୟ ସମାଜ ହୋଇଯିବ ନାହିଁ ଏବଂ ତାହା ହେବା ବାଞ୍ଛନୀୟ ମଧ୍ୟ ନୁହେଁ । କିନ୍ତୁ ପୂର୍ବାବସ୍ଥାର ପରିବର୍ତ୍ତନ

ଏକାନ୍ତ ବାଞ୍ଛନୀୟ । ଏ ସମ୍ବନ୍ଧରେ ବିସ୍ତୃତ ଆଲୋଚନାର ସ୍ଥଳ ଏ ନୁହେ । ଲଜ୍ଜା ସମ୍ଭ୍ରମ ରକ୍ଷା ନିମିତ୍ତ ଯେପରି ବସ୍ତ୍ର ବ୍ୟବହାରର ପ୍ରୟୋଜନ, ଭାଷାର ମଧ୍ୟ ସେହିପରି ସଦ୍‌ବ୍ୟବହାରର ପ୍ରୟୋଜନ । ଭାଷା ମଧ୍ୟରେ 'କୁ' 'ସୁ' ସକଳ ପ୍ରକାର ବ୍ୟବହାର୍ଯ୍ୟ ବିଷୟର ଶବ୍ଦ ଅବଶ୍ୟ ରହିବ, କିନ୍ତୁ ତାହା ବୋଲି ସକଳ ପ୍ରକାର କଥାର ଯଥେଚ୍ଛା ବ୍ୟବହାର କି ସୁସଙ୍ଗତ ? ପୁଣି ଏକାର୍ଥବୋଧକ ଦୁଇ କିମ୍ବା ତତୋଽଧିକ ଶବ୍ଦ ମଧ୍ୟରେ ବ୍ୟବହାର ଗୁଣରେ ସମାଜ ମଧ୍ୟରେ କେଉଁଟି ମାର୍ଜନୀୟ, କେଉଁଟି ବା ଦୂଷଣୀୟ ହୋଇଅଛି, ଏଥିପ୍ରତି ଦୃଷ୍ଟି ନରଖି କେବଳ ଏକାର୍ଥବୋଧକ ଗୋଟିଏ ଶବ୍ଦ ସ୍ଥାନରେ ଉପରଟି ବ୍ୟବହାର କରିବା ସମ୍ପୂର୍ଣ୍ଣରୂପେ ଅଯୌକ୍ତିକ । ଅସାଧୁ ପ୍ରୟୋଗ ସର୍ବଥା ପରିହାର୍ଯ୍ୟ । ସମାଜ ମଧ୍ୟରେ ଏହିପ୍ରକାର ଅସାଧୁ ପ୍ରୟୋଗର ବାହୁଲ୍ୟ ଘୋର ଲଜ୍ଜାର କଥା । ଏଥିରେ ପୁଣି ଅସ୍ଥାନ-ପ୍ରୟୋଗ ଦୋଷ ଅଛି ।

ଏ ଦୁଇଟି ଦୋଷ ଆମ୍ଭମାନଙ୍କ ସମାଜରେ ପୂର୍ଣ୍ଣ ମାତ୍ରାରେ ରହିଅଛି । ପାତ୍ରାପାତ୍ର, କାଳାକାଳ ପ୍ରତି ଦୃଷ୍ଟି ନଦେଇ ଆମ୍ଭମାନଙ୍କ ଦେଶରେ ଲୋକେ ଭାଷାର ଯେପରି ଅପବ୍ୟବହାର କରିଅଛନ୍ତି ଓ ବର୍ତ୍ତମାନ ମଧ୍ୟ କରୁଅଛନ୍ତି, ତାହା କାହାରି ଅବିଦିତ ନାହିଁ । ଭାଇ ଭାଇକି, ପିତା ପୁତ୍ରକୁ ଯେପରି ଅପକଥାରେ ଗାଳି ଦିଅନ୍ତି ଏବଂ ଯେପରି ସର୍ବସମକ୍ଷରେ ଲୋକେ ଅପକଥା ବ୍ୟବହାର କରନ୍ତି, ତାହା ସମାଜ ପକ୍ଷରେ ଘୋର କଳଙ୍କର କଥା, ସନ୍ଦେହ ନାହିଁ ।

ସୁଖର ବିଷୟ, ଶିକ୍ଷିତ ଓ ଅଶିକ୍ଷିତ ମଧ୍ୟରେ ଏ ବିଷୟରେ ଅନେକ ପ୍ରଭେଦ ଦେଖାଯାଏ, ପୁଣି ଶିକ୍ଷିତ ବୃଦ୍ଧ ଓ ଶିକ୍ଷିତ ଯୁବକ ମଧ୍ୟରେ ସୁଦ୍ଧା ପ୍ରଭେଦ ଦୃଷ୍ଟ ହୁଏ । ଏଥିରୁ ସ୍ପଷ୍ଟ ବୋଧ ହେଉଅଛି, ଶିକ୍ଷିତ ରସନା କ୍ରମେ ସଂଯତ ହୋଇ ଆସୁଅଛି ।

ଅମ୍ଭମାନଙ୍କ ଭାଷାକୁ କୁତ୍ସିତ ଭାଷାର ଶ୍ରେଣୀ କହିଲେ ଚଳେ । କଳ୍ପନାପ୍ରିୟ ଜାତି ଯେଉଁ ଅଙ୍ଗକୁ ଯେତେବେଳେ ଦୃଷ୍ଟି ଦେଉଅଛନ୍ତି, ସେ ଅଙ୍ଗେ ବହୁ ନୂତନ ଭାବ ଓ ଭଙ୍ଗୀ ଉଦ୍ଭୂତ ହୋଇଅଛି । ଏକ ଆଡ଼େ ଉତ୍କୃଷ୍ଟ ଭାବର ପରାକାଷ୍ଠା, ଅନ୍ୟ ଆଡ଼େ ଅପକୃଷ୍ଟ ଭାବର କିଛି ବାକି ନାହିଁ । ଏକ ଏକ ଭାବ କେତେକ ମହାପୁରୁଷ ହସ୍ତରେ କେତେକ ବର୍ଣ୍ଣରୂପ ଧାରଣ କରି ଜନସାଧାରଣଙ୍କ ସମ୍ମୁଖରେ ଆସି ଉପସ୍ଥିତ ହୋଇଅଛି । କ୍ରମେ ଶାଖା ପ୍ରଶାଖା ବିସ୍ତାରିତ ହୋଇ ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇଅଛି । ନୀଚପ୍ରବୃତ୍ତିଘଟିତ ବ୍ୟାପାରମାନ ଯେପରି ଏଦେଶୀୟ କବିମାନଙ୍କଦ୍ୱାରା ବିଶଦରୂପେ ବ୍ୟାଖ୍ୟାତ ହୋଇଅଛି, ସେପରି ଅନ୍ୟ କୌଣସି ଦେଶରେ ଅଛି ବୋଲି ଅମ୍ଭମାନଙ୍କୁ ଜଣା ନାହିଁ । କବିମାନେ ଉପମା ଉପରେ ଉପମା ଅଡ଼ାଇ ଦେଇଅଛନ୍ତି; କାବ୍ୟରସପ୍ରିୟ ପାଠକଗଣ ପଢି ଶୁଣି ମୁଗ୍ଧ ! ପୁଣି ପ୍ରଚଳିତ କଥାରେ ତ ବାକି ନାହିଁ । କୁକଥା ଶୁଣି ଶୁଣି କର୍ଣ୍ଣ ବଧିର ହୋଇଗଲାଣି ! ପଥ ଚାଲିବାବେଳେ, ଗୃହରେ ବସିବା ବେଳେ, କର୍ମକ୍ଷେତ୍ରରେ କର୍ମ କରିବାବେଳେ, କୌଣସି ସମୟରେ ତ୍ରାହି ନାହିଁ — ଏପରିକି ଧର୍ମମନ୍ଦିରମାନ ମଧ୍ୟ ପରିତ୍ରାଣ ପାଇ ନାହିଁ ।

ଅମ୍ଭେମାନେ ବାରମ୍ବାର କହୁଅଛୁଁ, ଔଦାସୀନ୍ୟ ଅମ୍ଭମାନଙ୍କର ବର୍ତ୍ତମାନ ଜାତୀୟ ଚରିତ୍ର ହୋଇଅଛି । ଜାଣି ଶୁଣି ଆଖି ବୁଜିବା, ପୁଣି ସମୟ ପଡ଼ିଲେ ସର୍ବପ୍ରକାର ବିଷୟରୁ ଆଧ୍ୟାତ୍ମିକ ଓ ବୈଜ୍ଞାନିକ ତତ୍ତ୍ୱ ବାହାର କରିବା, ଏ ଦେଶରେ ଶିକ୍ଷିତଲୋକଙ୍କର ଗୋଟିଏ ରୋଗ ହୋଇଅଛି । ସହୃଦୟତାର ଦୃଷ୍ଟାନ୍ତ ଅତି ବିରଳ । ଅଭାବ ଗଣି ଗଣି, ଦୋଷ ବଣି ଗଣି, ତଥାପି ସମ୍ମିଳିତ ଚେଷ୍ଟା ବା ସତ୍କାର୍ଯ୍ୟରେ ପ୍ରବୃତ୍ତ ଅତି ବିରଳ । ସମାଜସ୍ଥ ଯାବତୀୟ ଅପକୃଷ୍ଟ ବିଷୟ ପ୍ରତି ତୀକ୍ଷ୍ଣ ଦୃଷ୍ଟି ନଦେଲେ, ତାହାର ଉଚ୍ଛେଦସାଧନରେ ବଦ୍ଧପରିକର ନହେଲେ,

ସମାଜର କଳଙ୍କ ଦୂର ହୁଏ ନାହିଁ; ଉନ୍ନତିର ମାର୍ଗ ପରିଷ୍କୃତ ହୁଏ ନାହିଁ । ଭାଷାର ଏହି ଦୈର୍ଯ୍ୟ ବ୍ୟବହାର ଗୋଟିଏ ସାମାନ୍ୟ କଳଙ୍କ ନୁହେ । ଅମ୍ଭେମାନେ ଆଶା କରୁଁ, ଯେଉଁମାନେ ଏହାକୁ ଲଜ୍ଜାଜନକ ଓ ଘୃଣାଜନକ ଜ୍ଞାନ କରନ୍ତି, ସେମାନେ ଏହାର ପ୍ରତିବିଧାନରେ ଯତ୍ନବାନ୍ ହେବେ । ଯଦ୍ଦ୍ୱାରା ଭାଷାର ମର୍ଯ୍ୟାଦା ଓ ଜାତିର ମର୍ଯ୍ୟାଦା ଉଭୟ ରକ୍ଷିତ ହେବ, ଆମ୍ଭମାନଙ୍କ ଗୃହ ଏବଂ ସମାଜ ସୁଶିକ୍ଷାର ପ୍ରଶସ୍ତ କ୍ଷେତ୍ରରୂପରେ ପରିଣତ ହେବ, ତତ୍ପ୍ରତି ଔଦାସୀନ୍ୟ ପ୍ରକାଶ କରିବା କଦାଚ ମନୁଷ୍ୟତ୍ୱର ଲକ୍ଷଣ ନୁହେ ।

---

## ଓଡ଼ିଶାର ସୂର୍ଯ୍ୟ ମନ୍ଦିର *

କୋଣାର୍କରେ ବର୍ତ୍ତମାନ କିଛି ନାହିଁ, ବିସ୍ତୃତ ପ୍ରାନ୍ତର ମଧ୍ୟରେ କେବଳ ଗୋଟିଏ ଅତୀତର ସମାଧିମନ୍ଦିର—ଶୈବାଳାଚ୍ଛନ୍ନ ପରିତ୍ୟକ୍ତ ଜୀର୍ଣ୍ଣ ଦେବାଳୟ ଏବଂ ତାହାର ବିଜନ ବକ୍ଷରେ ପ୍ରାଚୀନ କାଳର ଗୋଟିଏ ବିପୁଳ କାହାଣୀ । ସେହି ପୁରାତନ ଦିନ, ଯେତେବେଳେ ଏହି ମନ୍ଦିରଦ୍ୱାରରେ ଠିଆ ହୋଇ ଲକ୍ଷ ଲକ୍ଷ ଶୁଭ୍ରକାନ୍ତି ବ୍ରାହ୍ମଣଯାଜକ ଯଜ୍ଞୋପବୀତଜଡ଼ିତହସ୍ତରେ ସାଗରଗର୍ଭରୁ ପ୍ରଥମ ସୂର୍ଯ୍ୟୋଦୟ ଅବଲୋକନ କରୁଥାନ୍ତି; ନୀଳ ଜଳ ଶୁଭ୍ର ଫେନରେ ସେମାନଙ୍କ ପଦତଳେ ଉଚ୍ଛ୍ୱସିତ ହୋଇ ଉଠୁଥାଏ ଏବଂ ନୀଳ ଆକାଶ ଅବତାରିତ ପ୍ରୀତି ସହିତ ଅରୁଣିମା ଆଶୀର୍ବାଦଧାର ବର୍ଷଣ କରୁଥାଏ । ତାମ୍ରଲିପ୍ତ ବନ୍ଦରଠାରୁ ସିଂହଳ,

---

* ବଙ୍ଗଲେଖକ ସ୍ୱର୍ଗୀୟ ବଳେନ୍ଦ୍ରନାଥ ଠାକୁରଙ୍କ ଗ୍ରନ୍ଥାବଳୀର 'କଣାରକ' ଶୀର୍ଷକ ପ୍ରବନ୍ଧର ଅନୁବାଦ ।

ଚୀନ ଏବଂ ଅନ୍ୟାନ୍ୟ ନାନା ଦୂରଦେଶକୁ ପଣ୍ୟ ଓ ଯାତ୍ରୀ ଧରି ଜାହାଜ ଯେଉଁ ସମସ୍ତ ବୃହତ୍ ଅର୍ଣ୍ଣବ ଯାନ ଗମନାଗମନ କରୁଥାଏ, ସେଗୁଡ଼ିକର ନାବିକମାନେ ଏହି କୋଣାର୍କ ମନ୍ଦିରର ମଧୁର ଘଣ୍ଟାଧ୍ୱନି ଶୁଣି ବହୁ ଦିନ ସନ୍ଧ୍ୟା କାଳରେ ଦୂରରୁ ଦେବତାଙ୍କୁ ସସମ୍ଭ୍ରମ ଅଭିବାଦନ ଜଣାଉଥାନ୍ତି ଏବଂ ଦେବତାଙ୍କର ଯଶଘୋଷଣାରେ ତରଣୀର ସୁବିସ୍ତୃତ ଚୀନାଂଶୁକେତୁ ଉଡ୍ଡୀୟମାନ ହେଉଥାଏ। ମନ୍ଦିରର ବହିଃପ୍ରାଙ୍ଗଣରେ, ଦ୍ୱାର ସମ୍ମୁଖରେ ସିନ୍ଧୁତରଙ୍ଗସେବିତ ପ୍ରାଚୀନ କଳ୍ପବଟମୂଳରେ ଶତ ସହସ୍ର ଯାତ୍ରୀ—କେତେ ଦୁରାରୋଗ୍ୟ ରୋଗ ହାତରୁ ମୁକ୍ତିଲାଭ କରିବା ଉଦ୍ଦେଶ୍ୟରେ ଆସି ପଡ଼ିଥାନ୍ତି। ଥରେ ଯଦି ସୂର୍ଯ୍ୟଦେବଙ୍କର ଅନୁଗ୍ରହ ହୁଏ, ଥରେ ଯଦି ମହାଦ୍ୟୁତି ନିଜର କନକ କିରଣରେ ସମସ୍ତ ଜ୍ୱାଳା ଯନ୍ତ୍ରଣା ହରଣ କରି ନିଅନ୍ତି, ତାହାହେଲେ ଗଭୀର ଆଶ୍ୱାସନା!

ଆଜିକାଲି ଏହି ଅର୍କକ୍ଷେତ୍ରରେ ଯାତ୍ରିର ପଦଧୂଳି ଆଉ ପଡ଼ୁନାହିଁ। ପୁରୀଠାରୁ ଦଶ କ୍ରୋଶ ବାଲୁକାମୟ ପଥ ଅତିକ୍ରମ କରି ଭଗ୍ନ ମନ୍ଦିରଟିଏ ଦେଖିବାକୁ ଯିବ କିଏ? ମନ୍ଦିରର ସବୁ ପଡ଼ି ଯାଇଅଛି—କେବଳ ଜଗମୋହନଟି କେତେ ଶୃଙ୍ଗାରୀ ଭାସ୍କର୍ଯ୍ୟରେ ଓ ଅନନ୍ୟ ଶିଳ୍ପକଳାର ପ୍ରସ୍ତରନିର୍ମିତ ଦ୍ୱାରଦେଶରେ ଦୈବାଗତ ପଥିକଗଣଙ୍କର ନୟନମନ ଆକର୍ଷଣ କରେ ଏବଂ ପୁରାତତ୍ତ୍ୱବିତ୍ ଏହି ମନ୍ଦିରର ଚତୁର୍ଦ୍ଦିଗରେ ବୁଲି ବୁଲି ଦେଖେ, ପାଷାଣରେ ପ୍ରାଚୀନ ଭାରତବର୍ଷ ଆପଣାକୁ କି ସୁନ୍ଦରରୂପେ ମୁଦ୍ରିତ କରିଅଛି। ଇତସ୍ତତଃ ବିକ୍ଷିପ୍ତ ଜୀବଜନ୍ତୁଗଣଙ୍କ ମୂର୍ତ୍ତିସକଳ କି ସୁନ୍ଦର! ଏପଟେ ସୁଗ୍ରୀବ କେଶରଭରା ଅଶ୍ୱ, ଏପଟେ ସୁନ୍ଦର ସୁଠାମ କରିବର! କେବଳ ସିଂହ ଦୁଇଟି ପ୍ରକୃତିର ଅନୁରୂପ ନୁହେଁ—କିନ୍ତୁ ତାହା ପୁଣି ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରର ସିଂହ ସହିତ ତୁଳନାରେ କେତେ ପରିମାଣରେ ସିଂହ ଭଳି। ଆଉ ସେହି ଅତୁଳ୍ୟ

ଶିଳ୍ପ—ନବଗ୍ରହ; ଉତ୍କଳ କୃଷ୍ଣ ପାଷାଣଖଣ୍ଡରେ ମୁଦ୍ରିତ କେତେ ଗୋଟି ବୃଦ୍ଧ ସଦୃଶ ପ୍ରଶାନ୍ତ ହାସ୍ୟବଦନ, ହସ୍ତରେ କାହାର ଜପମାଳା, କାହାର ବା ଅର୍ଦ୍ଧଚନ୍ଦ୍ର, କାହାର ଅବା ପୂର୍ଣ୍ଣପାତ୍ର । ବର୍ତ୍ତମାନ ଏହି ନବଗ୍ରହମୂର୍ତ୍ତି ମନ୍ଦିରଠାରୁ ପ୍ରାୟ ଶହେଶତ ହସ୍ତ ଦୂରରେ ଇଂରେଜମାନଙ୍କର କୌତୂହଳଥୋପରି ଶାୟିତ; କଲିକତାଠାକୁ ନେବାକୁ ଚେଷ୍ଟା କରାଯାଇ ନିଆ ଯାଇ ପାରି ନାହିଁ; ପଥିକମାନେ ତାହା ଦେହରେ ସିନ୍ଦୂରଲେପନ-ପୂର୍ବକ ଭକ୍ତିଭରେ ପ୍ରଣାମ କରନ୍ତି । କିନ୍ତୁ ଏହି ନୂତନଲବ୍ଧ ଭକ୍ତି ଏବଂ ପ୍ରୀତି ଲାଭ କରି ସୁଦ୍ଧା ଆଉ କେତେ ସମୟ ପଡ଼ି ରହିଲେ ଏହି ଅନ୍ତର୍ଦ୍ଧାନ ପ୍ରାଚୀନ କୀର୍ତ୍ତି ଶୀଘ୍ର ଧ୍ୱଂସ ହୋଇ ପଡ଼ିବ ।

ଓଡ଼ିଶାର ବାର ବର୍ଷର ରାଜସ୍ୱ ସମୁଦ୍ରର ବାଲୁକାତଟରେ ଏହି ଏକ ମାତ୍ର ପାଷାଣମନ୍ଦିରରେ ନିଃଶେଷ ହୋଇଅଛି । ମନ୍ଦିରଟି ତ ସାମାନ୍ୟ ନୁହେ । ଗତ ଶତାବ୍ଦୀରେ ମଧ୍ୟ ମହାରାଷ୍ଟ୍ରୀୟମାନେ ଏହାରହିଁ ପଥର ଖସାଇ ଖସାଇ ଜଗନ୍ନାଥଙ୍କ ଗୌରବ ବଢ଼ାଇଛନ୍ତି ଏବଂ ଜଗନ୍ନାଥଙ୍କ ସିଂହଦ୍ୱାର ସମ୍ମୁଖରେ ଯେଉଁ ସମୁଚ୍ଚ ଅରୁଣସ୍ତମ୍ଭ ଦେଖାଯାଏ, ତାହା ମଧ୍ୟ ଏହି କୋଣାର୍କର ଗୌରବର ଭଗ୍ନାବଶେଷ ।

କଳାସଙ୍କୋଚର ସେତେବେଳେ ସୃଷ୍ଟି ନଥିଲା । ମନ୍ଦିରର ସକଳ ଭିତ୍ତି ପୂର୍ଣ୍ଣ କରି କତ୍ନ ନାଗମୂର୍ତ୍ତି—ବିଚିତ୍ର ଅଙ୍ଗଭଙ୍ଗୀ ଓ ସୁଢ଼ୌଳଗଠନ ଅନେକ ସ୍ଥଳରେ ଶିଳ୍ପର ଅସାଧାରଣ ନୈପୁଣ୍ୟର ପରିଚୟସୂଚକ ଏବଂ ଅଧିକାଂଶ ସ୍ଥଳରେ ଶିଳ୍ପର ଅସାଧାରଣ ନୈପୁଣ୍ୟର ପରିଚାୟକ ଏବଂ ଯେଉଁ ବାହାରେ ଯେପରି, ଭିତରେ ମଧ୍ୟ ସେହିପରି ଥିଲା । ନର୍ତ୍ତକୀର ଲାସ୍ୟଲୀଳା ଦେବତାଙ୍କ ମନୋରଞ୍ଜନ କରୁଥାଏ ଏବଂ ଭୋଗବିଳାସରେହିଁ ଦେବତଉରତ୍ତର ସମସ୍ତ ଗୌରବ ନିହିତ ଥିଲା । ଓଡ଼ିଶା ଦେବମନ୍ଦିରରେ ନର୍ତ୍ତକୀର ପ୍ରାଧାନ୍ୟ ଏବେ ସୁଦ୍ଧା ଅଳ୍ପ ଊଣା ନୁହେ । ଜଗନ୍ନାଥଙ୍କ ପବିତ୍ର

ନିକେତନରେ ଏବେ ପୂଜା ନିତ୍ୟ ଗ୍ରପଲାଲା ଅନୁଷ୍ଠିତ ହୁଏ ଏବଂ ତଦ୍ବାରା ପଣ୍ଡାମାନଙ୍କ ପୁଣ୍ୟସଞ୍ଚୟରେ କୌଣସି ବ୍ୟାଘାତ ଲାଗେ ନାହିଁ ।

ଏହି ବିଳାସଙ୍କିତ ମନ୍ଦିରଦ୍ୱାରକୁ କେତେ ଲୋକ କେତେ ଦିନ ଅନ୍ତରେ ଦାରୁଣ ନିର୍ବେଦ ଧରି ଆସିଅଛନ୍ତି । ସଂସାର ସଙ୍ଗେ ସଙ୍ଗେ କାମନାର ଉଦ୍ରେକ କରେ, କୌଣସି ଦିନ ସ୍ତ୍ରୀର ମୁଖ ଦେଖି ମୋହ ଉପସ୍ଥିତ ହୁଏ, ସନ୍ତାନର ମାୟା ଭୁଲି ହୁଏ ନାହିଁ, ବୃଦ୍ଧ ପିତା ମାତାଙ୍କ ଅଶ୍ରୁଜଳ ବନ୍ଧନଚ୍ଛେଦନରେ ବାଧା ଦିଏ, ଗୃହ, ସ୍ତ୍ରୀ, ପୁତ୍ର, ପିତା, ମାତା ସକଳ ପରିଜନ ପରିତ୍ୟାଗ କରି ଲୋକେ ଦେବଦ୍ୱାରରେ ଆସି ପଡ଼ିଛନ୍ତି—ହେ ଦେବତା ରକ୍ଷାକର, ମାୟାପାଶ ଛିନ୍ନ କରିଦିଅ, ମୁଁ ତୁମ ଦ୍ୱାରରେ ଚିରଦିନ ସନ୍ନ୍ୟାସୀ ହୋଇ ରହିବି । ହାୟ, ଜଡ଼ଦେବତା, ସେ ଯଦି ବୁଝନ୍ତା, ତୁମେ ତ ଅନ୍ଧକାର ମୋହସୃଷ୍ଟିରେ ଗଢ଼ିତ । କ୍ଷୀଣ ଦୀପାଲୋକରେ ତୁମେ ଭକ୍ତହୃଦୟର ବୈରାଗ୍ୟ ଅନୁମୋଦନ କର ଏବଂ ଶତ ଦୀପାଲୋକରେ ତୁମ୍ଭରିହିଁ ସମ୍ମୁଖ-ପ୍ରାଙ୍ଗଣରେ ନିତ୍ୟ ମଦନବିଳାସର ଏକ ଏକ ଅଙ୍କ ଅଭିନୀତ ହୁଏ ।

ତେବେ ଏ କି ମାୟା ? ଏ କଣ ଏହି ସଂସାରଖେଳର ଗୋଟିଏ ରୂପକ ? ଚତୁର୍ଦିଗରେ ମଦନ ମଦ ଯୌବନ ନେଇ ନିତ୍ୟ ଯେଉଁ ଆନ୍ଦୋଳନ ଉଠୁଅଛି, ତାହାର ମଧ୍ୟରେହିଁ ଅନ୍ତର ଉପରୁ ଅବିଚଳିତ ଶାନ୍ତଭାବ ଅବଲମ୍ବନ କରିରହିପାରେ ? ଏଣୁ ଭକ୍ତହୃଦୟ ତୁମର ମନ୍ଦିର ଦେଖି ମନେ କରେ, ବିଶ୍ୱସଂସାରର ବହିଃପ୍ରାଚୀରରେ ଆମ୍ଭେମାନେ ଏହି ଭାସ୍କର୍ଯ୍ୟ ଭଳି—ନିଜ ନିଜର ସତନ୍ତ୍ର ଜୀବନ ଯୌବନ ନେଇ ନିତ୍ୟ ଏହି ବିଶ୍ୱପାଷାଣରେ ମୁଦ୍ରିତ ହେଉଅଛୁଁ; କିନ୍ତୁ ବିଶ୍ୱର ଅନ୍ତର ମଧ୍ୟରେ ଯେଉଁ ମହାନ୍ ଦେବତା ଜାଗି ବସିଛନ୍ତି; ଏହି ମାୟାବୁଦ୍‌ବୁଦ ତାଙ୍କ ଚରଣରେ ପହଞ୍ଚେ ନାହିଁ । ବୈରାଗ୍ୟ ଓ ବିଳାସ ଯେପରି ଦେବତାମନ୍ଦିରରେ ଦୁଇ

ଦିଗନ୍ତୁ ଆସି ମିଶିଅଛି—କେବଳ ଏପଠି ସେପଠି, କେବଳ ଭିତର ବାହାର, କେବଳ ଦେହ ମନ ।

କୋଣାର୍କରେ ବର୍ତ୍ତମାନ ଦେବତା ନାହାନ୍ତି—ଏତେ କଥା କହିବା ଉଚିତ ନୁହେ । କିନ୍ତୁ ସମସ୍ତ ପ୍ରାନ୍ତରବ୍ୟାପି ସେଠାରେ ଏକ ନିଷ୍ଫଳ ବୈରାଗ୍ୟ ବସା ବାନ୍ଧି ଅଛି । ତାହାର ମୁଖରେ କେବଳ ହାୟ, ହାୟ ! ବୈଦାନ୍ତିକ ମାୟାବାଦୀ ପରି ସେ ଏତିକି ମାତ୍ର କହୁଛି ଯେ, ଜୀବନ ଅନିତ୍ୟ, ଯୌବନ ଅନିତ୍ୟ, ଧନଜନ ଅନିତ୍ୟ, ସୃଷ୍ଟି ଅନିତ୍ୟ, ସଂସାର ଅନିତ୍ୟ । ସକଳ ଯେଉଁଠାରେ ଅନିତ୍ୟ ଓ ମାୟା, ସେଠାରେ ଦେବାଳୟରେ ବିଡ଼ମ୍ବନା କାହିଁକି ? ବାର ବର୍ଷର ଦୁର୍ଭିକ୍ଷ ମଧ୍ୟରେ ଏହି ପାଷାଣ ସ୍ତୂପ ରଚନା କରି କି ଲାଭ ? ଦେଶକାଳ ର ସାଗରବକ୍ଷରେ ଗୋଟିଏ କ୍ଷଣିକ ବୁଦ୍‌ବୁଦ ମାତ୍ର । ହାୟ ! ମାୟାହତ, ତୁମେ ଜାଣି ଶୁଣି ମଧ୍ୟ ଏହା ବୁଝିଲ ନାହିଁ ।

ମାୟା ସତ୍ୟ—ବିଧାତାଙ୍କ ମାୟାରାଜ୍ୟରେ ଏହା କେବଳ ମାନବର ମାୟା ସ୍ୱପ୍ନ ।

ଭୁଲକରି ଶାମ୍ବ ସେ ଦିନ ସରୋବରକୁ ଆସିଥିଲେ—ଜନନୀ ଜାମ୍ବବତୀ ଜାଣିଥିଲେ ନିଷେଧ କରିଥାନ୍ତେ, ଜନକ ଶ୍ରୀକୃଷ୍ଣ ସଙ୍ଗେ ଥିଲେ ଆସିବାକୁ ଅନୁମତି ଦେଇ ନଥାନ୍ତେ—ଶାମ୍ବଙ୍କ ବିମାତୃଗଣ ସେତେବେଳେ ପରିପୂର୍ଣ୍ଣ ଯୌବନରେ ଜଳକ୍ରୀଡ଼ାରେ ମତ୍ତ । ମୃଣାଳ ଭୁଜ ଆନ୍ଦୋଳନରେ ଜଳ ଯେପରି ଚଞ୍ଚଳ ହୋଇ ଉଠୁଥାଏ, ସୁନ୍ଦରୀଗଣଙ୍କର ଯୌବନ ମଧ୍ୟ ସେତେବେଳେ ସେହିପରି ଆବେଗରେ ଆନ୍ଦୋଳିତ ହେଉଥାଏ । ଏହି ପଥରେ ଶାମ୍ବ ! ପିତୃମୁଖରୁ ଅଭିଶାପ ବାହାର ହେଲା—କୁଷ୍ଠରୋଗରେ ତୁମର ପ୍ରାୟଶ୍ଚିତ୍ତ ହେଉ । ଅଭିଶପ୍ତ ଶାମ୍ବ ଦ୍ୱାଦଶବର୍ଷ କାଳ ଶାନ୍ତ ଦାନ୍ତ ନିରାହାର ବାୟୁଭକ୍ଷ ଜିତେନ୍ଦ୍ରିୟ ହୋଇ

ଚନ୍ଦ୍ରଭାଗା ନଦୀତୀରରେ ସୂର୍ଯ୍ୟଦେବଙ୍କୁ ସନ୍ତୁଷ୍ଟ କଲେ ଏବଂ ସର୍ବପାପଘ୍ନ ଦିବାକରଙ୍କ ବରରେ ରୋଗମୁକ୍ତ ହୋଇ ମୁକ୍ତିଦାତା ଦେବତାଙ୍କ ନାମରେ ଏହି ମନ୍ଦିର ଉତ୍ସର୍ଗ କଲେ ।

ଏହି ଅର୍କ କ୍ଷେତ୍ରକୁ ଆସି ସମୁଦ୍ରରେ ସ୍ନାନ କଲେ ସକଳ ପାପରୁ ସଦ୍ୟ ମୁକ୍ତିଲାଭ ହୁଏ । ଏଠାରେ ଅର୍କବଟ ଦେଖାଯାଏ; ସୂର୍ଯ୍ୟ ସ୍ୱୟଂ ଏଠାକୁ ଆସି ଏହି ରୂପ ଧାରଣ କରିଥିଲେ । ଉତ୍ତମପକ୍ଷ କାଳ ଏହି ବଟବୃକ୍ଷ ତଳେ ବସି ସୂର୍ଯ୍ୟମନ୍ତ୍ର ଜପ କଲେ ମାନବ ତତ୍‌କ୍ଷଣାତ୍ ଚରମ ସଦ୍‌ଗତି ଲାଭକରେ । ଏଠାରେ ରଥଯାତ୍ରା ଦେଖିବା ମାତ୍ରେ ସୂର୍ଯ୍ୟଙ୍କ ଶରୀରରୂପ ଦର୍ଶନଲାଭ ଘଟେ । ଯେଉଁ ପୁଣ୍ୟବାନ ଲୋକ ଏହି ସ୍ଥଳରେ ଆସି ଅନନ୍ୟ-ମନସ୍କଭାବରେ ନବଗ୍ରହସ୍ତୋତ୍ର ପାଠ କରିପାରେ, ସେ ଧନ୍ୟ ! ଅର୍କ-କ୍ଷେତ୍ରର ମହିମା ଏକ ମୁଖରେ କହି ଶେଷ କରିହେବ ନପାରେ । କପିଳ-ସଂହିତାରଚୟିତା ଶତଶ୍ଳୋକରେ ତାହା ଶେଷ କରି ପାରି ନାହାନ୍ତି ।

କିନ୍ତୁ ଏହି ଘୋର କଳିର ଅଭ୍ୟୁଦୟରେ ସେହି ପ୍ରାଚୀନ ଶ୍ଳୋକ-ସନ୍ଦର୍ଭ ମଧ୍ୟ ବ୍ୟର୍ଥ । ସଂହିତା ଶୁଣୁଛି କିଏ ? କିଏ ମାନୁଛି କିଏ ? ମନ୍ଦିର-ଦ୍ୱାରଠାରୁ ସମୁଦ୍ର ଯେପରି ମାଇଲ ପଥ ଗୁଞ୍ଚି ଯାଇଛି, ଯାତ୍ରୀଙ୍କ ପ୍ରବାହ ମଧ୍ୟ ସେପରି ଅର୍କକ୍ଷେତ୍ର ଛାଡ଼ି ପୁରୁଷୋତ୍ତମରେ ଯାଇ ଲାଗିଅଛି । ରୌଦ୍ରଦୀପ୍ତ ନାରିକେଳ ତରୁଶ୍ରେଣୀ ମଧ୍ୟରେ ଶୈବାଳଶ୍ୟାମ କୋଣାର୍କ କେବଳ ଚିତ୍ରାର୍ପିତବତ୍ ଦେଖାଯାଏ ।

ପରିତ୍ୟକ୍ତ ପାଷାଣସ୍ତୂପର ନିର୍ଜ୍ଜନ ନିକେତନରେ କଣାଚର ବାଦୁଡ଼ି ବସା ନିର୍ମାଣ କରୁଅଛି, ହିମଶିଳାଖଣ୍ଡ ଉପରେ ବିଷଧର ଫଣିନୀ ମଳାବାନ୍ଧି କାଃଟଙ୍କ ବିଶ୍ରାମସୁଖରେ ଲୀନ ହୋଇଅଛି; ସମ୍ମୁଖର ଝିଲ୍ଲୀ-ମୁଖରିତ ପ୍ରାନ୍ତର ଦେଶ ମଧ୍ୟରେ ଗ୍ରାମ୍ୟ ପଥିକଗଣ ଯେତେବେଳେ କଦାଚିତ୍ ଦୂର ତୀର୍ଥ

ଉଦ୍ଦେଶ୍ୟରେ ଯାତ୍ରା କରନ୍ତି, ଥରେ ଏହି ଜୀର୍ଣ୍ଣ ଦେବାଳୟ ସମ୍ମୁଖରେ ଛିଡ଼ାହୋଇ ଚତୁର୍ଦ୍ଦିଗ ପ୍ରତି ଦୃଷ୍ଟିପାତ କରନ୍ତି ଏବଂ ବିଳମ୍ବ ନକରି ଅପର ସୂର୍ଯ୍ୟାସ୍ତ ପୂର୍ବେ ଦ୍ରୁତପଦରେ ପୁନର୍ବାର ଗନ୍ତବ୍ୟ ପଥରେ ଚାଲନ୍ତି । କୋଣାର୍କ ବର୍ତ୍ତମାନ କେବଳ ସ୍ୱପ୍ନ ପରି, ମାୟା ପରି, ଯେପରି କୌଣସି ପ୍ରାଚୀନ ଉପକଥାର ବିସ୍ମୃତପ୍ରାୟ ଉପସଂହାର-ଶୈବାଳ-ଶଯ୍ୟାରେ ଏହିଠାରେ ନିଃଶବ୍ଦରେ ଅବସ୍ଥିତ ହୋଇଅଛି ଏବଂ ଅସ୍ତଗାମୀ ସୂର୍ଯ୍ୟଙ୍କର ଶେଷ ରଶ୍ମି-ରେଖାରେ କ୍ଷୀଣପ୍ରାଣ ମୃତ୍ୟୁମୁଖରେ ରକ୍ତିମ ଅଭ୍ର ପଡ଼ି ସମସ୍ତ ସ୍ଥଳଟି ଗୋଟିଏ ଚିତ୍ରାଦୃଶ୍ୟ ପ୍ରାୟ ବୋଧହୁଏ । ମନେ ହୁଏ,

"ଯଦୁପତେଃ କ୍ୱ ଗତା ମଥୁରାପୁରୀ
ରଘୁପତେଃ କ୍ୱ ଗତୋତ୍ତର କୋଶଳାଃ"

---

## ଧର୍ମଶାସ୍ତ୍ରକାର
## ଗଦାଧର ରାଜଗୁରୁ

ମହାପୁରୁଷମାନଙ୍କ ଜନ୍ମ ସାଧାରଣ ଲୋକଙ୍କ ଜନ୍ମ ପରି ନିରର୍ଥକ ନୁହେ । ଦେଶର ଭାବ, ଚିନ୍ତା ଓ ଚରିତ୍ରର ପ୍ରତିନିଧିସ୍ୱରୂପ ସେମାନେ ଜନ୍ମଗ୍ରହଣ କରନ୍ତି, ସେମାନଙ୍କ ଜୀବନରେ ଜାତୀୟ ଜାଗରଣପ୍ରଭାବ ଦେଖାଯାଏ । ଦେଶର ଯେଉଁ ଅବସ୍ଥାରେ ସେମାନେ ଜାତ ହୁଅନ୍ତି ଅଦମ୍ୟ ଉଦ୍ୟମରେ ତାହାର ଅବରୋଧ ଉନ୍ମୁକ୍ତ କରିବା ସେମାନଙ୍କ ଜୀବନର ମୁଖ୍ୟ ଲକ୍ଷ୍ୟ ହୋଇଥାଏ । ତ୍ରିଲୋକପାବନୀ ଶୈଳରାଜତନୟା ତ୍ରିପଥଗା ପରି ବା ଜଳ, ସ୍ଥଳ, ଖେଚରଙ୍କ ଜୀବନରକ୍ଷକ ସତତଗତି ପବନ ସଦୃଶ ସ୍ୱୀୟ କଣର ଶରୀରକୁ ପରୋପକାରରେ ଲଗାଇ ଥାଆନ୍ତି । ଏତାଦୃଶ ବ୍ୟକ୍ତି ସୃଷ୍ଟିପ୍ରଥ ଭାରତର ଅନ୍ୟ ପ୍ରଦେଶ ଅନୁପାତରେ ଉତ୍କଳରେ ବହୁଳ ନୁହନ୍ତି ।

ପୁଣ୍ୟପୀଠ ଜଗନ୍ନାଥ କ୍ଷେତ୍ରଠାରୁ ଏକ କୋଶ ଉତ୍ତରରେ ପଦ୍ମା ପ୍ରାୟ ଗଡ଼ଥ କୂଳରେ ବୀରହରେକୃଷ୍ଣପୁର ନାମକ ଗୋଟିଏ କୁଳୀନ ବ୍ରାହ୍ମଣଶାସନ ଅଛି । ଏହି ସ୍ଥାନର ପ୍ରାକୃତିକ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଏହା ନାନାବିଧ ବୃକ୍ଷରେ ପୂର୍ଣ୍ଣ ।

ସେଠାରେ ଗଦାଧରଙ୍କ ପିତାମହ ମହର୍ଷିପ୍ରତିମ କୃଷ୍ଣ ବଡ଼ପଣ୍ଡାଙ୍କର ତିନି ପୁତ୍ର ଥିଲେ, କିଏ କାହାକୁ ଊଣା ନୁହନ୍ତି । ସର୍ବ ବଡ଼ପୁଅ ହଳଧର ଜ୍ଞାନ ଓ ଦାନରେ ଅଗ୍ରଣୀ ଥିଲେ । ସେ ନିଜେ ବହୁ ଧନ ବ୍ୟୟ କରି ଶାରଦ ବାଜପେୟୀଯଜ୍ଞ କରାଇଥିଲେ । ସେ ଓଡ଼ିଶା ଗଜପତି ହରେକୃଷ୍ଣ ଦେବଙ୍କ ପୁଣ୍ୟମୟୀ ମହିଷୀଙ୍କର ପରମାରାଧ୍ୟ ଗୁରୁଦେବ ଥିଲେ । ବହୁ ଶତାବ୍ଦୀ ପୂର୍ବେ ଗୁଣଗ୍ରାହୀ ପଣ୍ଡିତ ଓ ନରପତିମାନେ ଧର୍ମପ୍ରଚାରକ ବିଦ୍ୱାନମାନଙ୍କ ପ୍ରତି କିପରି ସହାନୁଭୂତି ଦେଖାଉଥିଲେ ତାହା ନିମ୍ନଲିଖିତ ଘଟନାରୁ ସୁସ୍ପଷ୍ଟ ହୁଏ ।

ଗଦାଧର ରାଜଗୁରୁ ମହାଶୟ ଦେବଭାଷାବିଶାରଦ ଷୋଳପର କତିପୟ ଦାକ୍ଷିଣାତ୍ୟ ବ୍ରାହ୍ମଣଙ୍କୁ ଚତୁର୍ବେଦରୁ ଆଣାଇ ସେମାନଙ୍କର ଗ୍ରାସାଚ୍ଛାଦନାଦି ସୁଚାରୁରୂପେ ନିର୍ବାହ କରାଇବା ନିମନ୍ତେ ସେମାନଙ୍କୁ ପ୍ରଚୁର ଭୂମି ଦାନ କରି ସମାଦରପୂର୍ବକ ଏହି ଶାସନରେ ରଖାଇଥିଲେ । ଅଧିକନ୍ତୁ ମଧ୍ୟ ଏପରି ସୁବିଧା କରାଇ ଦେଇଥିଲେ ଯେ, ଏ ଶାସନୀୟମାନଙ୍କର ଧର୍ମକର୍ମାନୁଷ୍ଠାନରେ ତିଳେମାତ୍ର ଅବହେଳା ଘଟୁ ନଥିଲା । ଯେପରିକି— ପୌରୋହିତ୍ୟ ପାଇଁ ପୁରୋହିତ, କୁଶ ଦେବାକୁ ଦେବାଳକ, ଜ୍ୟୋତିଷ ଜଣାଇବାକୁ ଜ୍ୟୋତିଷୀ, ମାଳ ଯୋଗାଇବାକୁ ମାଳୀ, ଲୁଗା ଧୋବ କରିବାକୁ ଧୋବା, କ୍ଷୌର କରିବାକୁ ଭଣ୍ଡାରୀ, ବ୍ରାହ୍ମ ମୁହୂର୍ତ୍ତରୁ ନିଦ ଭାଙ୍ଗିବାକୁ ବେଣ୍ଡିମଙ୍ଗ ଆଦି ବେତନ ସ୍ୱରୂପରେ ବହୁତ ଭୂମି ପାଇ ବଂଶ ପରମ୍ପରାରେ ସନ୍ତ ଭଳି ନିଜ ନିଜ କାର୍ଯ୍ୟ କରିବାକୁ ନିତ୍ୟ ନିଯୁକ୍ତ ଥିଲେ ।

ମଧ୍ୟମ ପୁତ୍ର ନୀଳାମ୍ବର ରାଜଗୁରୁ ବ୍ୟାକରଣ, କାବ୍ୟ, ଷଡ଼୍‌ଦର୍ଶନ ସ୍ମୃତି, ଜ୍ୟୋତିଷ, ନୀତିଶାସ୍ତ୍ର ପ୍ରଭୃତିରେ ପାରଦର୍ଶୀ ଥିଲେ । ଏ ମଧ୍ୟ ଅନେକ ଧନ ବ୍ୟୟ କରି ବିଧିପୂର୍ବକ ଚତୁର୍ମାସ ଯଜ୍ଞ କରାଇଥିଲେ । ଏହାଙ୍କର ପଞ୍ଚଶିଷ୍ୟ ଉତ୍କଳର ଗଜପତି ରାଜା କୃଷ୍ଣଦେବ ନିଜର ହସ୍ତୀ, ଛତ୍ର, ଚାମର ପ୍ରଭୃତି ନେଇ ଏହି ନୀଳାମ୍ବର ରାଜଗୁରୁଙ୍କୁ ଯଥୋଚିତ ମର୍ଯ୍ୟାଦା ଦେଖାଉଥିଲେ । ଏଙ୍କ ସାନପୁଅ ଯମେଶ୍ୱର ବଡ଼ପଣ୍ଡା ମଧ୍ୟ ଯାଗ କରି ସର୍ବଦା ପୁରଶ୍ଚରଣପୂର୍ବକ କାଳାତିପାତ କରୁଥିଲେ ।

ଗଦାଧର ନୀଳାମ୍ବରଙ୍କ ଔରସରେ ଧର୍ମପତ୍ନୀ ଜାନକୀଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ, ଏହା ପ୍ରାୟ ତିନିଶ ବର୍ଷ ତଳର କଥା । ପ୍ରତିପତ୍ତିଶାଳୀ ନୀଳାମ୍ବର ରାଜଗୁରୁଙ୍କ ଓପାଦେୟ ପୁଅ ଗଦାଧରଙ୍କର ଶୈଶବାବସ୍ଥା ଯେ ଅନିର୍ବଚନୀୟ ଆନନ୍ଦରେ କଟିଥିବ ତାହା ସ୍ୱାଭାବିକ । କିନ୍ତୁ ସେ ବିଦ୍ୟାଚର୍ଚ୍ଚାରେ ଲେଶମାତ୍ର ତ୍ରୁଟି ନକରି ଅଳ୍ପ ସମୟ ମଧ୍ୟରେ ବୃଦ୍ଧପିତାଙ୍କ ପରି ଅସାଧାରଣ ପାଣ୍ଡିତ୍ୟ ଉପାର୍ଜନ କରିଥିଲେ । ସେ ଗୁରୁ ସାଥିଙ୍କ ମଧ୍ୟରେ ଗୃଅଟସ୍ୱୀୟ ହୋଇଥିବାରୁ ଏହାଙ୍କର "ସାମନ୍ତ" ଓ "ମହାପାତ୍ର" ନାମରେ ଦୁଇଗୋଟି ଉପାଧି ଥିଲା । ମାତ୍ର ସେ ନିଜର ବିଦ୍ୱତ୍ତା, ପ୍ରତ୍ୟୁତ୍ପନ୍ନମତିତ୍ୱ, ପ୍ରତିପତ୍ତି ଓ କୁଳପାରମ୍ପର୍ଯ୍ୟ ବଳରେ ଗଜପତି-ବଂଶର ଉପଯୁକ୍ତ ଗୁରୁ ହୋଇ ରାଜଗୁରୁ ଉପାଧିରେ ଅଳଙ୍କୃତ ଥିଲେ । ତେଣୁ ସେ ଗଦାଧର ରାଜଗୁରୁ ନାମରେ ସର୍ବତ୍ର ସୁପରିଚିତ ।

ସେ "ଗଦାଧର ପଦ୍ଧତି" ନାମରେ ପ୍ରକାଣ୍ଡ ଉତ୍କଳୀୟ ସ୍ମୃତିଗ୍ରନ୍ଥ ରଚନା କରି ଯାଇଛନ୍ତି । ତାହାର ଏକ ଏକ ଭାଗକୁ ସେ କାଳସାର, ଆହ୍ନିକସାର, ଦାନସାର, ସ୍ନାନସାର, ବ୍ରତସାର ପ୍ରଭୃତି ନାମଦେଇ ଅଠର ଖଣ୍ଡରେ ବିଭକ୍ତ କରିଅଛନ୍ତି । ମୂଳ କାଳସାର ଖଣ୍ଡରେ ନ୍ୟୂନ ପକ୍ଷରେ ଦୁଇଶ ତେତିଶ ଖଣ୍ଡ ପୁସ୍ତକରୁ ପ୍ରମାଣମାନ ଉଦ୍ଧୃତ ହୋଇ ଦେଖାଯାଇ

ଅଛି । ଏହି ସ୍ମୃତିର ଭାଷା ଅତି ସରଳ ଏବଂ ଏଥିରେ ନାନାଶାସ୍ତ୍ରର ପ୍ରମାଣ ଦିଆଯାଇଅଛି । ପୁଣି ରାଜଗୁରୁ ଥିବା ହେତୁ ଓଡ଼ିଶାକୁ ଓ ଜଗନ୍ନାଥମନ୍ଦିରକୁ ଅନୁଭବରେ ଆସିଥିବା ବିବାଦଗତ ଜଟିଳ ସମସ୍ୟାର ମୀମାଂସା, ନିଜେ କୁଳୀନ ଥିବାରୁ ଉଚ୍ଚକୁଳାଚାର, ପୁଣି ନିଜେ ଉଚ୍ଚପଦସ୍ଥ ବିଶୁଦ୍ଧ ଓଡ଼ିଆ ଥିବାରୁ ଉତ୍କଳର ରୀତିନୀତି ବିସ୍ତୃତ ଭାବରେ ଦର୍ଶାଇ ଅଛନ୍ତି । ଏହା ପ୍ରାକୃତିକ ଉତ୍କଳର ସର୍ବଜନାଦୃତ ସ୍ମୃତିଗ୍ରନ୍ଥ ।

ବାମଣ୍ଡାର ସୁପଣ୍ଡିତ ରାଜା ଶ୍ରୀ ଶ୍ରୀ ସୁଧଳଦେବ, କେ. ସି. ଆଇ. ଇ. ମୂଳଗ୍ରନ୍ଥ ଖଣ୍ଡିକ ଓଡ଼ିଆ ଲିପିରେ ଛପାଇଥିଲେ ଏବଂ ଏସିଆଟିକ୍ ସୋସାଇଟି ତାହା ଦେବନାଗରାକ୍ଷରରେ ଛପାଇଥିଲେ । ଏ ଖଣ୍ଡିକ ପ୍ରାୟ ପାଞ୍ଚଶ ପୃଷ୍ଠାରେ ଶେଷ ହୋଇଅଛି । ସରକାର ଏହି ପ୍ରସିଦ୍ଧ ଗଦାଧର ପଦ୍ଧତିକୁ ବଙ୍ଗ, ବିହାର ଓ ଓଡ଼ିଶାପ୍ରଦେଶରେ ସଂସ୍କୃତ ଉପାଧିପରୀକ୍ଷାର ଧର୍ମଶାସ୍ତ୍ର ବିଭାଗରେ ପାଠ୍ୟପୁସ୍ତକରୂପେ ନିର୍ବାଚନ କରି ପୁରାଣପ୍ରସିଦ୍ଧ ଓଡ଼ିଆ ଜାତିର ନାମମାତ୍ର ରଖିଅଛନ୍ତି । ପ୍ରତିଖଣ୍ଡ ବିଶ୍ଳେଷଣ କରି ଦେଖିଲେ ସାଧକ ଗଦାଧରଙ୍କ ବହୁଦର୍ଶିତାର ଅଦ୍ଭୁତ ପରିଚୟ ମିଳେ । ଯେତେବେଳେ ଛପାକଳ ନଥିଲା, ଖଣ୍ଡିଏ ତାଳପତ୍ର ପୁସ୍ତକ ଲୌହ ଲେଖନୀରେ ଲେଖାଇବାକୁ ବହୁକାଳ ବିତି ଯାଉଥିଲା, ତାହା ମଧ୍ୟ ପୁଅ ଛଡ଼ା ଅନ୍ୟକୁ ମିଳିବା ଦୁଷ୍କର ହେଉଥିଲା, ସେତେବେଳେ ସେ ତାଳପତ୍ର ପୁସ୍ତକରୁ କଠିନ ସଂସ୍କୃତ ଭାଷାରେ ଥରେ ଲେଖାଏଁ ଶାସ୍ତ୍ର ପଢି କିପରି ପ୍ରକାଣ୍ଡ ଗ୍ରନ୍ଥ ଲେଖିଯାଇ ଅଛନ୍ତି, ତାହା ଭାବିଲେ ଅବାକ୍ ହେବାକୁ ହୁଏ ।

କେହି କେହି ଦେଶବିଦେଶରେ କହି ଥାଆନ୍ତି ଯେ, ଓଡ଼ିଆ ଜାତିର ପୁରାତନ ପୁସ୍ତକ କିଛି ନାହିଁ । ମାତ୍ର ଲେଖକ ଦମ୍ଭର ସହିତ କହିପାରେ ଯେ, ଆଜିଯାଏ ଓଡ଼ିଆ ପୁସ୍ତକମାନଙ୍କର ସଂଖ୍ୟା କରି ହୋଇ ପାରିନାହିଁ ।

ବଙ୍ଗର "ରଘୁନନ୍ଦନ", ଦ୍ରାବିଡ଼ ଦେଶର "ଚୌଡାଣ୍ଡବ"ଙ୍କ ପରି ସରସ୍ୱତୀଙ୍କର ବରପୁତ୍ର ଗଦାଧର ଉତ୍କଳ ନଭୋମଣ୍ଡଳରେ ନିଷ୍କଳଙ୍କ କଳାନିଧି ପରି ସୁପ୍ରସିଦ୍ଧ ଧର୍ମଶାସ୍ତ୍ରାଲୋକରେ ଉତ୍କଳଖଣ୍ଡକୁ ଆଲୋକିତ କରିଯାଇ ଅଛନ୍ତି।

---

# ପଦ୍ମିନୀ

ଭାରତର ଗୌରବ-ମଣି, ହିନ୍ଦୁଜାତିର କୀର୍ତ୍ତି-ଖଣି ବୀରଭୂମି ମେବାରର ରାଜଧାନୀ ଚିତୋର ଅତ୍ୟୁଚ୍ଚ ଆରାବଲୀ ପର୍ବତ ଉପରେ ଅବସ୍ଥିତ। ବର୍ତ୍ତମାନ ଦୁର୍ଗଟିର ଅତୀତ ଶୋଭା ନାହିଁ କିମ୍ବା ସେହି ସୌଭାଗ୍ୟ ନାହିଁ। ଅଛି କେବଳ ତାର ଭଗ୍ନାବଶେଷ। ତାହା ଆଜି ସୁଦ୍ଧା ପ୍ରାଚୀନ ରାଜପୁତ-ଗଣଙ୍କର ବୀରତ୍ୱ ଓ ସ୍ୱଦେଶ-ପ୍ରୀତିର ମୂକସାକ୍ଷୀରୂପେ ଠିଆ ହୋଇଅଛି। ଅଦ୍ୟାପି ତାହା ପ୍ରାଚୀନ ରାଜପୁତକୁଳକାମିନୀମାନଙ୍କର ସତୀତ୍ୱ-ଗୌରବ ଓ ଧର୍ମ-ଭକ୍ତିର ସାକ୍ଷ୍ୟ ଦେଉଅଛି।

ଏହି ପ୍ରବନ୍ଧରେ ଯେଉଁ ସମୟର ବର୍ଣ୍ଣନା କରିବାକୁ ଯାଉଅଛୁଁ, ସେତେବେଳେ ଚିତୋରର ରାଣା ଥିଲେ ଭୀମସିଂହ। ସିଂହଳରାଜ ଚୌହାନ ବଂଶାବତଂସ ହାମିରଶଙ୍କରଙ୍କ କନ୍ୟା ପଦ୍ମିନୀ ରାଣା ଭୀମସିଂହଙ୍କର ମହିଷୀ। ସତୀକୁଳଶିରୋମଣି ହିନ୍ଦୁଜଗତବନ୍ଦ୍ୟା ପଦ୍ମିନୀ ରୂପ ଓ ଗୁଣରେ ଅତୁଳନୀୟା ଥିଲେ। ତାଙ୍କ ପରି ପତିଭକ୍ତିବତୀ, ଉଚ୍ଚବଂଶଜାତା ସ୍ତ୍ରୀ ସେତେବେଳେ ଭାରତରେ କାହିଁକି, ଜଗତରେ ଅନ୍ୟ କେହି ନଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଅନେକ କବି, ଐତିହାସିକ ଲେଖିଯାଇ ଅଛନ୍ତି ଯେ, ପଦ୍ମିନୀଙ୍କ ଦେହ ଓ ମୁଖର ସୌନ୍ଦର୍ଯ୍ୟ ଫୁଟାଇବା-ପାଇଁ ଭାଷାର ଶକ୍ତି ନାହିଁ। ତାଙ୍କର ନୟନ-ଜ୍ୟୋତି ନକ୍ଷତ୍ର ଅପେକ୍ଷା

ଉଜ୍ଜ୍ୱଳତର, କପୋଳ କାନ୍ତି ଗୋଲାପ ଦଳ ଅପେକ୍ଷା ଅଧିକ କମନୀୟ, ଓଷ୍ଠ ପ୍ରବାଳମଣିଠାରୁ ଅପେକ୍ଷା ଅଧିକ ଆରକ୍ତ, ଦନ୍ତପଂକ୍ତି ମୁକ୍ତା ଅପେକ୍ଷା ଶୁଭ୍ରତର ଏବଂ ସୁକୋମଳ, ସୁକୁମାର ହସ୍ତପଦ୍ମ ପଦ୍ମ-କୋରକ ତୁଲ୍ୟ ଅତ୍ୟନ୍ତ ମନୋହର ଥିଲା । ରମଣୀକୁଳରତ୍ନ ମେବାରର ପ୍ରସ୍ଫୁଟିତ ପ୍ରସୂନ ପଦ୍ମିନୀ ନାରୀସୁଲଭ ସୁଗୁଣାବଳୀର ଯେପରି ଗୋଟିଏ ଜୀବନ୍ତ ଜ୍ୱଳନ୍ତ ଦୃଷ୍ଟାନ୍ତ ।

କି ଅଶୁଭ ମୁହୂର୍ତ୍ତରେ କେଜାଣି, ଦିଲ୍ଲୀ-ସମ୍ରାଟ ଖିଲ୍‌ଜି-ବଂଶ-ବୀର ଆଲାଉଦ୍ଦୀନ ପଦ୍ମିନୀଙ୍କର ରୂପ-ଲାବଣ୍ୟ ସମ୍ବାଦ ପାଇଥିଲେ । ସେହି ସମୟାବଧି ସେ ହତଭାଗ୍ୟ ପଦ୍ମିନୀ-ରୂପ-ଚିନ୍ତାରେ ପାଗଳ ହୋଇ ଉଠିଲେ । ଦିଲ୍ଲୀର ବିପୁଳ ଐଶ୍ୱର୍ଯ୍ୟ ବିଭବକୁ ତୁଚ୍ଛ ଜ୍ଞାନ କରି ଅହୋ-ରାତ୍ରି କେବଳ ପଦ୍ମିନୀ-ରୂପ-ଭାବନାରେ ବୁଡ଼ି ରହିଲେ ।

ପଦ୍ମିନୀଙ୍କୁ ପାଇବା ନିମନ୍ତେ ସେ ଦୁଇଥର ଚେଷ୍ଟା କରି ବିଫଳକାମ ହେଲେ । ଶେଷରେ ସ୍ଥିର କଲେ ଚିତୋର ଆକ୍ରମଣ କରି ପଦ୍ମିନୀଙ୍କୁ ଟାଣି ନେବେ ।

କୃଷ୍ଣ ଚତୁର୍ଦ୍ଦଶୀ ନିଶୀଥ ଭୟଙ୍କର ଆକାର ଧରିଅଛି । ସୁପ୍ତ ଜଗତ ଉପରେ ତାହାର ଘନାନ୍ଧକାର ଆବରଣ ବିସ୍ତୃତ । ଚତୁର୍ଦ୍ଦିଗ ନିସ୍ତବ୍ଧ, କେବଳ ଦୁର୍ଗ-ପ୍ରାଚୀର ନିକଟରେ ବିନିଦ୍ର ପ୍ରହରୀମାନଙ୍କର ପଦଶବ୍ଦ, ଅସ୍ତ୍ରାଦିର ଝଣ୍‌ଝଣ୍ ଧ୍ୱନି ଅଳ୍ପ ଅଳ୍ପ ଶୁଣା ଯାଉଛି । ଚିତୋରର ରାଜ-ପଥରେ ଜନପ୍ରାଣୀ କେହି ନାହାନ୍ତି । ପଥର ଦୁଇ ପାର୍ଶ୍ୱରେ ପ୍ରତ୍ୟେକ ଗୃହରେ ନାଗରିକଗଣ ନିଦ୍ରିତ । ଉପରେ ନକ୍ଷତ୍ରମାଳା ନିସ୍ତବ୍ଧ ଦୃଷ୍ଟିରେ ପୃଥିବୀକୁ ଅନାଇ ରହିଛନ୍ତି । ଏହି ସମୟରେ ଆଲାଉଦ୍ଦୀନ ସସୈନ୍ୟ ଚିତୋର ଅବରୋଧ କଲେ । ଦୁର୍ଗର ଚତୁର୍ଦ୍ଦିଗ ପଠାଣସେନା ପିପୀଲିକା ଶ୍ରେଣୀପରି ଘେରି ପକାଇଲେ । ଦେଖୁଁ ଦେଖୁଁ ଏହି ସମ୍ବାଦ ବିଦ୍ୟୁଦ୍-ବେଗରେ ଚିତୋର ତମାମ ପ୍ରଚାରିତ ହୋଇଗଲା । ଅଳ୍ପକ୍ଷଣ ମଧ୍ୟରେ

ଚିତୋରବାସୀଗଣ ଅସାମଦାୟିନୀ ନିଦ୍ରାଦେବୀଙ୍କ କୋଳ ତ୍ୟାଗ କରି ମୁକ୍ତିଦାତ୍ରୀ ରଣଚଣ୍ଡୀଙ୍କର ଭୈରବ କୋଡ଼ରେ ଆଶ୍ରୟ ନେବା ନିମିତ୍ତ ବଦ୍ଧପରିକର ହେଲେ । ଚିତୋରବାସୀଙ୍କ ଚକ୍ଷୁରୁ ପ୍ରଖର ଫୁଲିଙ୍ଗ ବାହାରି ନୈଶ ବାୟୁ ମଣ୍ଡଳକୁ ଉତ୍ତପ୍ତ କରି ପକାଇଲା । ସମସ୍ତେ ବୀରଦର୍ପରେ ମାତି ଉଠିଲେ । ଚିତୋର ଉପରେ ଉତ୍ତେଜନା, ଉନ୍ମାଦନାର ଗୋଟିଏ ଝଟିକା ଭୀମବେଗରେ ବହିଗଲା । ରାଜପୁତ ବୀରମାନେ ଅତି ଶୀଘ୍ର ଦୁର୍ଗପ୍ରାଚୀର ନିକଟକୁ ଧାଇଁ ଯାଇ ପଠାଣ ସୈନ୍ୟ ଉପରେ ପ୍ରସ୍ତରବୃଷ୍ଟି ଆରମ୍ଭ କଲେ । ପ୍ରସ୍ତରାଘାତରେ ଦୁର୍ଗର ବହିର୍ଭାଗରେ କୃଷ୍ଣସାଗର ଭଳି ଅସଂଖ୍ୟ ମାନବ-ସମୁଦ୍ର ବିଘୋରିତ ହୋଇ ଉଠିଲା । ଏକାବେଳକେ ସହସ୍ର ସହସ୍ର ମୁସଲମାନ ଚୂର୍ଣ୍ଣ ହୋଇ ପଡ଼ିଲେ । ଶତ୍ରୁସେନା ଦୁର୍ଗଭେଦନ ସଂକଳ୍ପ ତ୍ୟାଗ କରି ଦୁର୍ଗର ନିମ୍ନ-ଭାଗରେ ଆଶ୍ରୟ ନେଲେ । ସେତେବେଳେ ଉଷାର ଉଜ୍ଜ୍ୱଳ ଜ୍ୟୋତି ପୂର୍ବାକାଶରେ ଭାସି ଉଠୁଥିଲା । ସମ୍ରାଟଙ୍କର ଚିତୋର ଅବରୋଧ ବିଫଳ ହେଲା—ତାଙ୍କର ସେହି ମୃଗତୃଷ୍ଣା କେଉଁ ଆଡ଼େ ଉଭେଇ ଗଲା ।

ଅଲ୍ଲାଉଦ୍ଦୀନ ରାଣାଙ୍କୁ କହି ପଠାଇଲେ ଯେ, ସେ ଚିତୋର-ରାଜ-ଭବନର ଅତିଥିରୂପେ ଯାଇ ଥରେ ମାତ୍ର ପଦ୍ମିନୀଙ୍କୁ ଦେଖି, ଅନ୍ୟଥା ଦର୍ପଣରେ ତାଙ୍କର ପ୍ରତିବିମ୍ବ ଦେଖି ଦିଲ୍ଲୀ ଫେରିବେ—ଦୁର୍ଗାବରୋଧରୁ ବିରତ ହେବେ । ଏହି ଅପ୍ରୀତିକର ସନ୍ଧି-ପ୍ରସ୍ତାବ ଶୁଣି ଚିତୋରର ସମସ୍ତେ କ୍ରୋଧରେ ଜଳି ଉଠିଲେ । କିନ୍ତୁ ପଦ୍ମିନୀ ଧୀର ଗମ୍ଭୀର ସ୍ୱରରେ କହିଲେ —'ମୁଁ ଆଉ ରାଜପୁତ-ସନ୍ତାନର ରକ୍ତପାତ ଦେଖି ପାରିବି ନାହିଁ । ଯବନକୁ ଦେଖା ଦେବି । ଦୋଷ କଣ ? ପୁତ୍ର କଣ ମା'ର ରୂପ ଦେଖେ ନାହିଁ ? ଅଲ୍ଲାଉଦ୍ଦୀନ ଆଜି ଚିତୋରର ଅତିଥି—ଅତିଥିର ବାସନା ପୂରଣ କରିବି । ଶୀଘ୍ର ଯାଇ ସମ୍ରାଟଙ୍କୁ ଏହି ଉତ୍ତର ଦିଅ ।'

ଯଥାସମୟରେ ରାଣାଙ୍କ ନିକଟରୁ ବାଞ୍ଛିତ ଉତ୍ତର ପାଇ ଅଲ୍ଲାଉଦ୍ଦୀନ ପରମ ପରିତୁଷ୍ଟ ହେଲେ । ମନେ ମନେ ସ୍ଥିର କରି ନେଲେ ଯେ, ଏହି କୌଶଳରେ ସେ ହିନ୍ଦୁସ୍ଥାନ-ଗୌରବ ପଦ୍ମିନୀଙ୍କୁ ଦିଲ୍ଲୀକୁ ଟାଣିନେବେ, ପରେ ଚିତୋରର ଧ୍ୱଂସସାଧନ କରିବେ । ରାଜପୁତ ଜାତିର ଅତିଥି-ପରାୟଣତା, ଉଦାରତା ଉପରେ ନିର୍ଭର କରି ସମ୍ରାଟ କେତେକ ଜଣ ଦେହରକ୍ଷୀଙ୍କୁ ସଙ୍ଗେ ଧରି ଚିତୋର-ରାଜପ୍ରାସାଦରେ ଉପସ୍ଥିତ ହେଲେ । ରାଣା ତାଙ୍କୁ ବନ୍ଧୁ ଭାବରେ ଗ୍ରହଣ କଲେ, ଯଥେଷ୍ଟ ସମ୍ମାନ ପ୍ରଦର୍ଶନ କଲେ । ସମ୍ରାଟଙ୍କୁ ସଙ୍ଗେ ଧରି ସେ ପଦ୍ମିନୀଙ୍କ କକ୍ଷରେ ପ୍ରବେଶ କଲେ । ଅଲ୍ଲାଉଦ୍ଦୀନ ଉପଯୁକ୍ତ ଆସନରେ ଉପବିଷ୍ଟ ହେଲେ । ପରେ ସେ ଦର୍ପଣରେ ପଦ୍ମିନୀଙ୍କର ପ୍ରତିବିମ୍ବ ଦେଖି ମୁଗ୍ଧ, ଚକିତ ହୋଇଗଲେ । ପଦ୍ମିନୀ ମାନବୀ ନା ଦେବୀ, କିଛି ବୁଝି ପାରିଲେ ନାହିଁ । ମୁକୁରରେ ଯାହା ଦେଖିଲେ ତାହା ପଦ୍ମିନୀଙ୍କର ସଜୀବ ମୂର୍ତ୍ତି ଅଥବା ଚିତ୍ର ପ୍ରତିମା ? ସମ୍ରାଟଙ୍କ ମନରେ ସନ୍ଦେହ ଉଦିତ ହେଲା । କିନ୍ତୁ ଦର୍ପଣ ପ୍ରତି ବାରମ୍ବାର ଦୃଷ୍ଟିପାତ କରି ସେହି ସନ୍ଦେହରୁ ମୁକ୍ତ ହେଲେ ।

ଅଲ୍ଲାଉଦ୍ଦୀନ ରାଣାଙ୍କୁ ଅଶେଷ କୃତ୍ରିମ ଧନ୍ୟବାଦ ଦେଇ ବିଦାୟ ନେଇଗଲେ । ଶିଷ୍ଟତା ବିଷୟରେ ଯବନ ନିକଟରେ ପରାସ୍ତ ହେବାକୁ ଅନିଚ୍ଛୁକ ହୋଇ ଭୀମସିଂହ ସମ୍ରାଟଙ୍କ ସହିତ ଦୁର୍ଗଦ୍ୱାର ପର୍ଯ୍ୟନ୍ତ ଗଲେ । ସେମାନେ ଦୁର୍ଗର ଶେଷ ଫାଟକ ନିକଟରେ ପହଞ୍ଚିବା ପରେ ରାଣା ସମ୍ରାଟଙ୍କ ନିକଟରୁ ବିଦାୟ ଗ୍ରହଣ କରି ସେଠାରୁ ଫେରି ଦୁର୍ଗ ମଧ୍ୟରେ ପ୍ରବେଶ କରିବାକୁ ଉଦ୍ୟତ ହୋଇଛନ୍ତି, ଏପରି ସମୟରେ କୃତଘ୍ନ, କପଟୀ ଯବନସମ୍ରାଟ ବଂଶୀଧ୍ୱନି କଲେ । ବଂଶୀଧ୍ୱନି ଶୁଣିବାକ୍ଷଣି ପଠାଣ ସୈନିକ କେତେ ଜଣ ହଠାତ୍ ଆସି ରାଣାଙ୍କୁ ଶୃଙ୍ଖଳାବଦ୍ଧ କରିଦେଲେ । ହିନ୍ଦୁଜାତିର ଚରିତ୍ର-ମହିମା ଉପରେ ନିର୍ଭର କରି ସମ୍ରାଟ ରାଣାଙ୍କୁ

କୌଶଳରେ ଧରି ନେବା ଉଦ୍ଦେଶ୍ୟରେ ଦୁର୍ଗଦ୍ୱାର ନିକଟରେ ପଠାଣ ସୈନିକମାନଙ୍କୁ ଲୁଚାଇ ରଖିଥିଲେ । ନିକଟରେ ରାଜପୁତ କେହି ନଥିଲେ । ରାଣା ଏକାକୀ ବା କଣ କରିପାରିବେ ? କ୍ରୋଧରେ ତାଙ୍କର ଗଣ୍ଡଯୁଗଳ ଆରକ୍ତ ହୋଇ ଉଠିଲା । ସମ୍ରାଟ ଆଦେଶରେ ପଠାଣ ସୈନିକ-ମାନେ ରାଣାଙ୍କୁ ଶିବିରକୁ ଟାଣିନେଲେ ।

ଆଲ୍ଲାଉଦ୍ଦୀନ ଚିତୋରକୁ କହି ପଠାଇଲେ, ପଦ୍ମିନୀଙ୍କୁ ଅବିଳମ୍ବେ ତାଙ୍କ ହାତରେ ଅର୍ପଣ ନକଲେ, ସେ ଭୀମସିଂହଙ୍କୁ କଦାପି ଛାଡ଼ିବେ ନାହିଁ । ଏହି ଦାରୁଣ ସମ୍ବାଦରେ ଚିତୋର ବାସିଗଣ ନିତାନ୍ତ ଉତ୍କଣ୍ଠିତ ହୋଇ ଉଠିଲେ । ପଦ୍ମିନୀ ମ୍ରିୟମାଣ ହୋଇ ପଡ଼ିଲେ । ଶୋକ ଓ ଉଦ୍‌ବେଗରେ ତାଙ୍କ ହୃଦୟ ଆଚ୍ଛନ୍ନ ହୋଇଗଲା । ଚିନ୍ତା ପରେ ଚିନ୍ତା ଆସି ତାଙ୍କ ମନକୁ ଆନ୍ଦୋଳିତ କରି ପକାଇଲା । ବହୁ ଚିନ୍ତା ପରେ ସେ ସ୍ଥିର କଲେ ଯେ, 'ଶଠେ ଶାଠ୍ୟଂ' ନୀତିର ଆଶ୍ରୟ ନେଇ ପତିଙ୍କୁ ଉଦ୍ଧାର କରିବେ । ସେ ଗୋରା ଓ ବାଦଲଙ୍କୁ ଡ଼କାଇ ପରାମର୍ଶ କଲେ । ଗୋରା ପଦ୍ମିନୀଙ୍କର ପିତୃବ୍ୟ—ଷାଠିବର୍ଷାଧିକ ପ୍ରୌଢ଼; ବାଦଲ ତାଙ୍କର ଭ୍ରାତୁଷ୍ପୁତ୍ର—ବାରବାଳକ, ବାରବର୍ଷର କିଶୋରବୟସ୍କ । ଆଲ୍ଲାଉଦ୍ଦୀନଙ୍କୁ ଠକି ରାଣାଙ୍କୁ କପଟ ମୁକ୍ତ କରିବାକୁ ହେବ, ପଦ୍ମିନୀ ଏହି ବିଷୟ ଦୁହିଙ୍କୁ ବୁଝାଇ ଦେଲେ । ଆନନ୍ଦ, ଉନ୍ମାଦନା, ଆଶା ଓ ଉତ୍ସାହରେ ଗୋରା ଓ ବାଦଲଙ୍କର ହୃଦୟ ନାଚି ଉଠିଲା—ଦୁହେଁ ରାଣୀଙ୍କ ବୁଦ୍ଧି ଓ ପ୍ରତ୍ୟୁତ୍ପନ୍ନମତିର ଖୁବ୍ ପ୍ରଶଂସା କଲେ ।

ପଦ୍ମିନୀ ଆଲ୍ଲାଉଦ୍ଦୀନଙ୍କ ନିକଟକୁ ପତ୍ର ଲେଖିଲେ ଯେ, ସମ୍ରାଟଙ୍କ ଇଚ୍ଛା ପୂରଣ କରିବା କାରଣ ସେ ଶିବିରକୁ ଯିବେ ଏବଂ ତାଙ୍କ ସଙ୍ଗେ ତାଙ୍କର ଧାଈ, ଦାସୀ, ସଙ୍ଗୀନୀଗଣ ଓ କେତେକ ଜଣ ରାଜପୁତକୁଳ-କାମିନୀ ମଧ୍ୟ ଯିବେ । ତାଙ୍କ ସହିତ ଯିବାକୁ ସେମାନଙ୍କୁ ଅନୁମତି

ଦେବା ସହାଶେ ଏବଂ ସେମାନଙ୍କ ପ୍ରତ୍ତ ପଠାଣମାନେ ଯେପରି କୌଣସି ଅତ୍ୟାଚାର ନକରନ୍ତି ତାହାର ବ୍ୟବସ୍ଥା କରିବା ସହାଶେ ସେ ସମ୍ରାଟଙ୍କୁ ପତ୍ରରେ ଅନୁରୋଧ କଲେ । ପଦ୍ମିନୀଙ୍କର ପତ୍ର ପାଇ କାମୋନ୍ମତ୍ତ ସମ୍ରାଟ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠିଲେ, ତାଙ୍କର ଚରିତ୍ରପ୍ତି କର କଳ୍ପନା ସ୍ରୋତରେ ଭାସି ହୃଦ୍‌ଦୃଷ୍ଟି ହରାଇ ବସିଲେ—ମେବାର ମହିଷୀଙ୍କର ପ୍ରସ୍ତାବରେ ସମ୍ମତ ହୋଇ ଉତ୍ତର ପଠାଇଲେ ।

ଆଲ୍ଲାଉଦ୍ଦୀନ ଉତ୍ତର ପାଇବାମାତ୍ରକେ ପଦ୍ମିନୀଙ୍କର ପୁରଦ୍ୱାର ମୃଣମଣ୍ଡଳରେ ଗୋଟିଏ ଅଦ୍ଭୁତ ମନୋହାର ଖେଳଗଲା । ତାଙ୍କ ଆଦେଶରେ ସେହିକ୍ଷଣି ସାତଶହ ଶିବିକା ସଜ୍ଜିତ ହେଲା । ପ୍ରତ୍ୟେକ ଶିବିକାରେ ଜଣେ ଜଣେ ରାଜପୁତ—ଅସ୍ତ୍ର ଶସ୍ତ୍ର-ସୁସଜ୍ଜିତ ଯୋଦ୍ଧା ଉପବିଷ୍ଟ । ପ୍ରତି ଶିବିକା ଛଅ ଜଣ ଗୁପ୍ତାସ୍ତ୍ରଧାରୀ ବାହକଦ୍ୱାରା ଚାଳିତ ।

ଆରୋହୀ ଓ ବାହକମାନେ ମେବାରର ବୀର-ରତ୍ନ, ସଦ୍‌ବଂଶଜାତ । ଦେଖୁଁ ଦେଖୁଁ ନାନା ମୂଲ୍ୟବାନ ଆଚ୍ଛାଦନମଣ୍ଡିତ ଶ୍ରେଣୀବଦ୍ଧ ଶିବିକା ସକଳ ସମ୍ରାଟ-ଶିବିରରେ ଯାଇ ପହଞ୍ଚିଲା । ଏହା ଦେଖି ସମ୍ରାଟଙ୍କର ହୃଦୟ ପୁଲକାତିଶଯ୍ୟରେ କମ୍ପିତ ହୋଇ ଉଠିଲା—ତାଙ୍କର ଆଶା ଓ ଆନନ୍ଦ ଆଉ ସୀମା ମାନିଲା ନାହିଁ ।

ଗୋରା ନିଜ ଶିବିକାରୁ ବହିର୍ଗତ ହୋଇ ନିଜ ବସ୍ତ୍ର ମଧ୍ୟରେ ଅସ୍ତ୍ର ଲୁଚାଇ ରଖି ଆଲାଉଦ୍ଦୀନଙ୍କ ନିକଟରେ ଭୀମସିଂହଙ୍କର ମୁକ୍ତି ପ୍ରାର୍ଥନା କଲେ । କିନ୍ତୁ ସମ୍ରାଟ୍ କହିଲେ, "ପଦ୍ମିନୀ ତାଙ୍କ ପାଖକୁ ନଯିବା ଯାଏଁ ରାଣା ମୁକ୍ତ ହେବେ ନାହିଁ ।" ପରେ ଗୋରା ଶାନ୍ତ ଭାବରେ ଜଣାଇଲେ ଯେ, "ଯବନୀ ହେବା ଆଗରୁ ପଦ୍ମିନୀ ରାଣାଙ୍କ ସହିତ ଶେଷ ସାକ୍ଷାତ୍ କରିବା ନିମନ୍ତେ ଅନୁଜ୍ଞା ପ୍ରାର୍ଥନା କରୁଥିଲେ ।"

ସମ୍ରାଟ୍ ପଦ୍ମିନୀଙ୍କୁ ଭୀମସିଂହଙ୍କ ସହିତ ସାକ୍ଷାତ୍ କରିବା ନିମନ୍ତେ କେବଳ ଅର୍ଦ୍ଧ ଘଣ୍ଟା ସମୟ ଦେଲେ। ତାଙ୍କ ଆଦେଶରେ ପଠାଣ ସେନାପତି ଗୋରାଙ୍କୁ ରାଣାଙ୍କର ବନ୍ଦୀଶାଳା ଦେଖାଇ ଦେଲେ। ଗୋରା ଯାଇ ଦ୍ୱାର ଫିଟାଇ ଦେବାରୁ ତାଙ୍କ ପଛେ ପଛେ ଛଅଜଣ ବାହକ ଶିବିକାଟିଏ ଧରି କାରାଗାରରେ ପ୍ରବିଷ୍ଟ ହେଲେ। ସେଠାରେ ଶୀଘ୍ରବୁଦ୍ଧି-ମତୀ ବାଦଲ ସେହି ଶିବିକାରୁ ବାହାରିଲେ। ଗୋରା ପଦ୍ମିନୀଙ୍କର କୌଶଳ ସମ୍ବନ୍ଧରେ ସ୍ପଷ୍ଟରୂପେ ବୁଝାଇ ଦେବାରୁ ରାଣାଙ୍କ ମନରେ ଅପୂର୍ବ ସନ୍ତୋଷ ଓ ଆଶ୍ୱାସନାର ଲହରୀ ଖେଳିଗଲା। ସେ ଅଧିକ ବିଳମ୍ବ ନକରି ସେହି ଶିବିକାରେ ବସିଲେ—ବାହକମାନେ ଅଲ୍ଲାଉଦ୍ଦୀନଙ୍କ ପାପ ଚକ୍ଷୁରେ ଧୂଳି ପକାଇ ଚିତୋର ଦୁର୍ଗ ପ୍ରତି ବିଦ୍ୟୁତ୍ ଗତିରେ ଧାବିତ ହେଲେ। ସେହିକ୍ଷଣି ରାଜପୁତବୀରମାନେ ଛଦ୍ମବେଶ ତ୍ୟାଗ କରି ନିଜ ନିଜ ମୂର୍ତ୍ତି ଧାରଣ କଲେ। ପ୍ରତାରକ ପ୍ରତାରିତ ହେଲା—ଛଳ ଯୁଦ୍ଧରେ ପଦ୍ମିନୀଙ୍କର ଜୟ ହେଲା।

ଅର୍ଦ୍ଧ ଘଣ୍ଟା କାଳ ଗଡ଼ିଗଲା, ତଥାପି ରାଣା ଓ ପଦ୍ମିନୀଙ୍କର କଥା ଶେଷ ହୋଇ ନଥିବାର ଦେଖି ଅଲ୍ଲାଉଦ୍ଦୀନଙ୍କ ମନରେ ପ୍ରଖର କ୍ରୋଧାଗ୍ନି ଜଳି ଉଠିଲା। ସେ କାରାଗାରକୁ ଯିବାକୁ ଉଦ୍ୟତ ହୋଇଥିଲେ, ଏହି ସମୟରେ ଜଣେ ପଠାଣ ସୈନିକ ଧାଇଁ ଯାଇ ତାଙ୍କୁ ଜଣାଇଲା ଯେ, ଅନେକ ରାଜପୁତ ଯୋଦ୍ଧା ସମସ୍ତ ଶିବିକାରୁ ବାହାରି ପଠାଣସେନାଙ୍କୁ ଛିନ୍ନ ଭିନ୍ନ କରୁଅଛନ୍ତି। ସମ୍ରାଟ୍ ଏକାବେଳକେ ସ୍ତମ୍ଭିତ! ମେବାର ମହିଷୀଙ୍କର ଭୀଷଣ ଷଡ଼ଯନ୍ତ୍ର ବୁଝିପାରି ସେ କ୍ରୁଦ୍ଧ ଓ ଲଜ୍ଜିତ ହେଲେ। ସେହିକ୍ଷଣି ତାଙ୍କ ଆଦେଶରେ ପଠାଣ ସୈନ୍ୟ ରାଜପୁତ ଯୋଦ୍ଧାମାନଙ୍କୁ ଆକ୍ରମଣ କଲେ ଏବଂ କେତେକ ସୈନ୍ୟ ରାଣା-ଶିବିକାବାହୀ ରାଜପୁତ୍-ମାନଙ୍କର ଅନୁସରଣ କଲେ। ଭୀଷଣ କୋଳାହଳ ଓ ଅସ୍ତ୍ରାଦିର ଝନ୍ ଝନ୍

ଧ୍ୱନରେ ଗଗନମଣ୍ଡଳ ପୂର୍ଣ୍ଣ ହୋଇଗଲା, ଚତୋର ପ୍ରାନ୍ତର କମ୍ପିତ ହେଲା । ଉଭୟ ପକ୍ଷର କ୍ରୁଦ୍ଧ ଘୃଣା, ସଞ୍ଚିତ କ୍ରୋଧ ଯେପରି ଅସ୍ତ୍ର-ମୁଖରେ ଅଗ୍ନି-ବର୍ଷଣ କରିବାକୁ ଲାଗିଲା ।

ଚତୋର-ଅଭିମନ୍ୟୁ ବୀରକୁଳତିଳକ ତ୍ରୟୋଦଶବର୍ଷୀୟ ବାଦଲ ଅତୁଳ ବୀରତ୍ୱସହ ଯୁଦ୍ଧ କଲେ । ତାଙ୍କର ପ୍ରଚଣ୍ଡ ସାହସ ଓ ଅଦ୍ଭୁତ ଅସିଶୃଙ୍ଖଳା ଦେଖି ପଠାଣମାନେ ଏକାବେଳକେ ସ୍ତବ୍ଧ ! ଦେଖୁ ଦେଖୁ ବାଦଲ ପଠାଣସେନାଦ୍ୱାରା ବେଷ୍ଟିତ ହେଲେ । ତାଙ୍କୁ ରକ୍ଷା କରିବାପାଇଁ ଗୋରା ଅତି ଚଞ୍ଚଳଗତିରେ ତାଙ୍କ ପାଖରେ ଯାଇ ଠିଆ ହୋଇଗଲେ । ଦୁହେଁ ଚମତ୍କାର ଯୁଦ୍ଧ କଲେ । କିନ୍ତୁ କିଛିକ୍ଷଣ ଯୁଦ୍ଧକରିବା ପରେ ବୀର-କେଶରୀ ଗୋରା ଅଗଣ୍ୟ ମୃତ କଳେବର ମଧ୍ୟରେ ଜୀବନର ଏକମାତ୍ର ଅବଲମ୍ବନ ବାଳକ ବାଦଲଙ୍କ ପାର୍ଶ୍ୱରେ ପ୍ରାଣବାୟୁ ବିସର୍ଜନକଲେ । ଝଟିକା-ବିକ୍ଷୋଭିତ ସାଗରତୁଲ୍ୟ ରାଜପୁତମାନଙ୍କ ନିର୍ଭୀକ ଆକ୍ରମଣରେ ପଠାଣସେନା ଆନ୍ଦୋଳିତ ହେବାକୁ ଲାଗିଲା । ଯୁଦ୍ଧ କରୁ କରୁ ଉଭୟ ପକ୍ଷର ସୈନ୍ୟ ଯାଇ ଚତୋର-ଦ୍ୱାର ନିକଟରେ ଏକତ୍ରିତ ହେଲେ ।

ଭୀମସିଂହ ଯବନ-କାରାଗାରରୁ ମୁକ୍ତ ହୋଇ ଦୁର୍ଗରେ ପ୍ରବେଶ କରିବାମାତ୍ରକେ ଦୁର୍ଗ-ଦ୍ୱାର ରୁଦ୍ଧ କରାଯାଇଥିଲା ଏବଂ ରାଜପୁତ ବୀରବୃନ୍ଦ ଦ୍ୱାରରେ ରହି ଅନୁସରଣକାରୀ ପଠାଣମାନଙ୍କର ଗତିରୋଧ କରିଥିଲେ । ଦ୍ୱାରନିକଟରେ ଭୟଙ୍କର ସଂଗ୍ରାମ ହେଲା । ସମ୍ରାଟ ଗୁରୁତର ଆଘାତପ୍ରାପ୍ତ ହେଲେ । ସେ ବୁଝିଲେ, ରାଜାର ଜୀବନ, ସ୍ତ୍ରୀଜାତିର ସମ୍ମାନରକ୍ଷା ନିମନ୍ତେହିଁ ରାଜପୁତ୍ର ବୀରଗଣଙ୍କର ଜନ୍ମପରିଗ୍ରହ । ସେ ଯୁଦ୍ଧରୁ କ୍ଷାନ୍ତ ହେବା ପାଇଁ ପଠାଣ ସୈନ୍ୟଙ୍କୁ ଆଦେଶ ଦେଲେ । ଯୁଦ୍ଧ ବନ୍ଦ ହେଲା ।

ଅଲ୍ଲାଉଦ୍ଦୀନଙ୍କର ପଦ୍ମିନୀ-ପିପାସା ନିବୃତ୍ତ ହେବାର ନୁହେ । ସେ ନୂତନ ସୈନ୍ୟ ସଂଗ୍ରହ କରି ପୁନର୍ବାର ଚତୋର ଆକ୍ରମଣ କଲେ—

ରଣଭେରୀ-ନାଦରେ ଚିତୋର ପ୍ରାନ୍ତର ପୁଣି ମୁଖରିତ ହୋଇ ଉଠିଲା। ସମ୍ରାଟଙ୍କର ଘନ ଘନ ଆକ୍ରମଣରେ ଚିତୋର ଦୁର୍ବଳ ହୋଇ ଯାଇଥିଲା; ତଥାପି ରାଜପୁତମାନେ ଅଭୂତ ବୀର ଗର୍ବରେ ଉନ୍ମତ୍ତ ହୋଇ ଜୀବନ-ମମତା ତ୍ୟାଗ କରି ପୁଣି ଯୁଦ୍ଧରେ ପ୍ରବୃତ୍ତ ହେଲେ।

ବାଦଲ, ଭୀମସିଂହ, ରାଣାଙ୍କ ଭ୍ରାତୁଷ୍ପୁତ୍ର ଲକ୍ଷ୍ମଣସିଂହ ଓ ଲକ୍ଷ୍ମଣସିଂହଙ୍କର ଏଗାର ଜଣ ପୁତ୍ର ଚିତୋରର ସମସ୍ତ ବୀରଙ୍କ ସଙ୍ଗେ ଚିତୋର ପାଇଁ, ପଦ୍ମିନୀଙ୍କର ଧର୍ମରକ୍ଷାପାଇଁ ଭୀଷଣ ଯୁଦ୍ଧ କରି ଚିର ନିଦ୍ରାରେ ଶାୟିତ ହେଲେ। ଚିତୋରର ପତନ ହେଲା।

ପଦ୍ମିନୀ ଜହରବ୍ରତର ଆୟୋଜନ କଲେ। ଚିତୋର ରମଣୀଗଣଙ୍କ ପ୍ରାଣକୁ ପ୍ରୀତି-ହିଲ୍ଲୋଳ ସ୍ପର୍ଶ କଲା। ସେମାନଙ୍କ ନବଜୀବନ ନବ ରାଗରେ ରଞ୍ଜିତ ହୋଇ ଉଠିଲା। ଚିତୋର-ସ୍ୱଜନଗଣ ମଙ୍ଗଳ ସଙ୍ଗୀତ ଗାଇ ଜହର-କୁଣ୍ଡ ପ୍ରତି ଅଗ୍ରସର ହେଲେ—ସମସ୍ତଙ୍କ ଆଗରେ ପଦ୍ମିନୀ, ପରେ ଅନ୍ତଃପୁରବାସିନୀଗଣ, ପଛରେ ପୁରନାରୀଗଣ। ମୁକ୍ତକେଶା ରକ୍ତ-ବସନା ରମଣୀଗଣଙ୍କ ସ୍ୱର୍ଗୀୟ ଦୀପ୍ତିରେ ଦିଗନ୍ତ ଉଦ୍ଭାସିତ ହୋଇ ଉଠିଲା। ସେମାନେ ଅଗ୍ନିକୁଣ୍ଡ ପ୍ରଦକ୍ଷିଣ କରି ସେଥିରେ ପୁଷ୍ପାଞ୍ଜଳି ଦେଲେ। ସେଠାରେ ଚିତୋରର ବ୍ରାହ୍ମଣମାନେ ଉପସ୍ଥିତ ଥିଲେ। ସ୍ୱଦେଶରକ୍ଷା, ସ୍ୱଜାତିପ୍ରୀତି ଓ ପାତିବ୍ରତ୍ୟ ସମ୍ବନ୍ଧରେ ପଦ୍ମିନୀ ଗୋଟିଏ ଅଗ୍ନିମୟୀ ବକ୍ତୃତା ଦେବା ପରେ, ଘନଘନ ହୁଳହୁଳି ଧ୍ୱନି, ଜୟଜୟାନନ୍ଦ-ରବ, ମନ୍ତ୍ରପାଠ ଓ ମଙ୍ଗଳ-ଗୀତଧ୍ୱନି ମଧ୍ୟରେ ରାଜପୁତନାରୀଗଣଙ୍କ ସଙ୍ଗେ ପବିତ୍ର ପ୍ରଜ୍ଜ୍ୱଳିତ ଅନଳ-କୁଣ୍ଡରେ ଲମ୍ଫ ଦେଇ ପଠାଣ-ଅତ୍ୟାଚାରରୁ ନିଜର ପରମଧନ ସତୀତ୍ୱ ରକ୍ଷା କଲେ। ଅଗ୍ନିଗହ୍ୱରରୁ, ଅଗୁରୁ, ଚନ୍ଦନ ଧୂପ ଧୂନାଦିର ଅପୂର୍ବ ସୁବାସ ଉଦ୍‌ଗତ ହୋଇ ଚତୁର୍ଦ୍ଦିଗ ଆମୋଦିତ କରିଦେଲା। ରାଶି ରାଶି ଲେଲିହାନ ଅଗ୍ନି-ଶିଖାର ନିବିଡ ଧୂମପୁଞ୍ଜ ଉଠି ଆକାଶମଣ୍ଡଳ ବ୍ୟାପ୍ତ କରି ଜଗତର ଅସାରତା ଜ୍ଞାପନ କଲା।

ଏହା ଦେଖି ଅଲ୍ଲାଉଦ୍ଦୀନ ଓ ପଠାଣ ସୈନ୍ୟ ସ୍ତମ୍ଭିତ, ବସ୍ମିତ ହୋଇଗଲେ । ସେମାନେ ରାଜପୁତଜାତିର, ରାଜପୁତରମଣୀଗଣଙ୍କର ପ୍ରଶଂସା ନକରି ରହି ପାରିଲେ ନାହିଁ । ପଦ୍ମିନୀଙ୍କର ପ୍ରାସାଦ ବ୍ୟତୀତ, ଚିତୋର ଦୁର୍ଗର ସକଳ ଅଟ୍ଟାଳିକା, ଗୃହ, ଦେବମନ୍ଦିର, ଉଦ୍ୟାନ ଧ୍ୱସ୍ତ କରିଦେବାପାଇଁ ଅଲ୍ଲାଉଦ୍ଦୀନ ପଠାଣ ସୈନ୍ୟଙ୍କୁ ଅଦେଶ ଦେଲେ । ତାଙ୍କ ଆଦେଶ ଶୀଘ୍ର ପାଳିତ ହେଲା—ପଠାଣମାନେ ଦୁର୍ଗର ଯେଉଁ ସ୍ଥାନରେ ଯାହା ଥିଲା ସବୁ ନଷ୍ଟ କରି ଦେଲେ, ଯେଉଁ ସ୍ଥାନରେ ଯାହା କିଛି ଧନରତ୍ନ ଥିଲା ସମସ୍ତ ଲୁଣ୍ଠି କରି ନେଲେ । ଶତ ଶତ ବର୍ଷର କୀର୍ତ୍ତି ସବୁ ଧ୍ୱଂସ ପାଇଲା—ଚିତୋର ଶ୍ମଶାନରେ ପରିଣତ ହେଲା ।

ଚିତାର କୁଣ୍ଡ ନିକଟରେ କୁସୁମହାର, କୁଙ୍କୁମଚୂର୍ଣ୍ଣ ଓ ଚନ୍ଦନକାଷ୍ଠ ବିକ୍ଷିପ୍ତ ହୋଇ ପଡ଼ିଥିଲା । ସାଧ୍ୱୀ ରାଜପୁତକାମିନୀଗଣଙ୍କର ସ୍ମୃତି-ଚିହ୍ନ-ସ୍ୱରୂପ କୁଙ୍କୁମଚୂର୍ଣ୍ଣ କିଛି ଧରି ଅଲ୍ଲାଉଦ୍ଦୀନ ମୁହ୍ୟ ପ୍ରାଣରେ ଅବଶିଷ୍ଟ ସୈନ୍ୟ ସହିତ ଦିଲ୍ଲୀକୁ ବାହୁଡ଼ିଲେ । ତାଙ୍କର ବହୁଦିନର ସାଧନା, ବହୁ ଦିନର ସୁଖ-ସ୍ୱପ୍ନ ବିଫଳ ହୋଇଗଲା । ଦିଲ୍ଲୀରେ ପଦସ୍ଥବାଷଣ୍ଡୀ ଅଲ୍ଲାଉଦ୍ଦୀନଙ୍କ ଚକ୍ଷୁରୁ ଦୁଇ ଧାର ଅଶ୍ରୁ ବହିଗଲା । ତାଙ୍କ ମନରେ ଭାବାନ୍ତର ଉଦ୍ରେକ ହେଲା । ସେ ମନେ ମନେ କହିଲେ—"ହାୟ, ଜଣେ ସାମାନ୍ୟ ନାରୀ ଦିଲ୍ଲୀ-ସମ୍ରାଟର ପ୍ରତାପ ଓ ବିଭବରେ ପଦାଘାତ କରି ଅବାଧଚିତ୍ତରେ ଚାଲିଗଲା । ମୋର ଲକ୍ଷ ଲକ୍ଷ ମୁଦ୍ରା, ଲକ୍ଷ ଲକ୍ଷ ସୈନ୍ୟ ସତୀକୁଳବନ୍ଦନୀୟା ପଦ୍ମିନୀଙ୍କର ଏକ ଗୁଚ୍ଛ କେଶ ସୁଦ୍ଧା ସ୍ପର୍ଶ କରି ପାରିଲା ନାହିଁ । ଧନ୍ୟ ହିନ୍ଦୁ ! ଧନ୍ୟ ହିନ୍ଦୁରମଣୀ ! ମୁସଲମାନ ଆଜି ମୁକ୍ତ-କଣ୍ଠରେ ଗୌରବସହକାରେ ରାଜପୁତଜାତିର ଶ୍ରେଷ୍ଠତ୍ୱ ସ୍ୱୀକାର କରୁ-ଅଛି । ଧନ୍ୟ ପଦ୍ମିନୀ ! ଶତବାର ଧନ୍ୟ ତୁମ୍ଭର ସତୀତ୍ୱ !"



# ଭକ୍ତି

ଜଗଜୀବନ ହେ, ତୁମ୍ଭଙ୍କୁ କରୁଣାସିନ୍ଧୁ,
ବୋଲିବାକୁ ମନ ବଳୁ ନାହିଁ ଯେଣୁ
ସିନ୍ଧୁ ତବ କୃପା-ବିନ୍ଦୁ । ଘୋଷା ।
ତୁମ୍ଭ ଭଜନରେ ହେବ ନାହିଁ ନାଥ
ମାଳା ଜପିବାକୁ ବାଧ,
କୋଟି କୋଟି ଗ୍ରହ କଣ୍ଠି ସେ ମାଳାର
କେ ଜପି କରିବ ସାଧ ?
ଦେଇ ନାହିଁ ବଳ ପଦଧୂଳି ଯେନି
ପାରିବ ନାହିଁ ମୋ ମୁଣ୍ଡ
କୋଟି କୋଟି ରବି ଧୂଳି ରୂପେ ତୁମ୍ଭ
ପାଦେ ହୋଇଛନ୍ତି ଗୁଣ୍ଡ ।
ହୃଦୟର କଥା ଜାଣିବାକୁ ଅଛି
ତୁମ୍ଭର ଅସୀମ ଶକ୍ତି,
ସେତିକ ଜାଣିବ ଯେତିକ ଅଛି ମୋ
ହୃଦେ ତୁମ୍ଭ ପ୍ରତି ଭକ୍ତି ।
ଥାପିବାକୁ ତୁମ୍ଭ ମୂରତି ମୋ କ୍ଷୁଦ୍ର
ହୃଦୟରେ ନାହିଁ ସ୍ଥାନ,
ସର୍ଷପ ଗରଭେ ରହି କି ପାରଇ
ହିମାଳୟ ସାନୁମାନ ?

କି ଦେଇ ତୁଷିବ        ଯାହା ମୁଁ ଦେଉଛି
ସବୁ ତୁମ୍ଭର ପ୍ରସାଦ,
ଯାହା ପରସାଦ        ତାଙ୍କୁ ଅରପିଲେ
ହେବ କିନା ଅପରାଧ !
ମୁଁ କାର ମାତର        ମୋର ନୁହେ ବୋଲି
କହିବାକୁ ନାହିଁ ବାଟ,
ତୁମ୍ଭ ଶ୍ରୀଚରଣେ        ଅର୍ପଣ କରୁଛି
ଯେନ ତା ବଣ-ସମ୍ରାଟ !

—:*:—

## ଚଷାପୁଅ ପ୍ରତି *

କହଁ ଚଷାପୁଅ        କାହାପାଇଁ ସହୁ
ବଇଶାଖ ଖର ଶ୍ରାବଣ ଧାର,
ପଦେ ଦଳ ତଳେ        ଖାଉଛନ୍ତି ଯେଉଁ
ଲାଗୁ ତାଙ୍କ ପାଇଁ ବରଷସାର ।
ପେଟକୁ ନଖାଇ        କେତେ ଶ୍ରମ ସହ
କହଁ ଶ୍ରମଜୀବୀ ଲାଗନ୍ତୁ ତୁହି,
କଠୋର ପେଷଣେ        ପଡ଼ି, କାହା ପଦେ
ଜୀବନ ସମ୍ପଦ ଦେବାକୁ ନେଇ ।
ତବ ଶ୍ରମ ଫଳେ        ଅଳସ ପ୍ରଜାକୁଳ
ବଞ୍ଚୁଛନ୍ତି କେତେ ଶକ୍ତିନ ଦେଶେ,

* Shelly's 'To Men of England' କବିତାର ମର୍ମାନୁବାଦ ।

ଯାର ଜୀବନନ୍ତ ଶତ୍ରୁ ଅଛ ତୁମ୍ଭେ
ଭୋଗୁଛନ୍ତି ସେହୁ କେତେ ଦରପେ ।
ଭୋଗୁ ନାହାନ୍ତି ସେ ପିଉଛନ୍ତି ତବ
ଜୀଅନ୍ତେ ଜୀବନ ଶୋଣିତଧାର,
ପଢ଼ିଗଲେ ପୁଣି ରହୁଛନ୍ତି ଟାଣ
ସଙ୍କୁଚ କରମ ସାଧିବେ ପୁରା ।
ବୁଦ୍ଧି କଉଣଲେ ଗଢ଼ୁଛ ଶିକୁଳି
ଛଅଣ୍ଟୁଛ କେତେ ବଡ଼ ଦୋରଡ଼ା,
ତୁମ୍ଭ ହାତେ ବଡ଼ ଶିକୁଳି, ଦୋରଡ଼ା
ତୁମ୍ଭର ପିଠିରେ ପଡ଼ୁଛି ପରା ।
ପ୍ରାଣ ମୂଲ ଦେଇ ଭୟେ ଭୟେ ରହୁ
ନ ପାଉଛ ତୁମ୍ଭେ ଜୀବନେ ଅନ୍ନ,
ଗଲା ସ୍ୱାଧୀନତା ଯାଉଛି ସମ୍ପଦ
ନଭୋଗ ସୋହାଗ ଟେଣିଚ ଥାଉ ।
ବୃଷ୍ଟିରୁ ବଦଳ କାଟୁଛି ଅପର
ଅରଜୁଛ ତୁମ୍ଭେ କେଉଁଛି ଧନ,
ଢାଳୁଛ ସବୁ ନୁହେ ସେ ତୁମ୍ଭର
କାରଟିର ତୁମ୍ଭ ଦଣ୍ଡ ଉଥାଣ ।
ବୁଣ ହେ ବଦନ ଦେଖ ଅନ୍ୟ କେହି
ନନେଉ ତୁମ୍ଭର ପାଠଲା ଫଳ,
ଅରଜ ସମ୍ପଦ କର ହେ ସମ୍ଭୋଗ
ନକରନ୍ତୁ ତାହା ବଞ୍ଚକେ କ୍ରୂର ।
ତୁମ୍ଭ ବୁଣା ଲୁଗା ପିନ୍ଧିବଟି ତୁମ୍ଭେ
ତୁମ୍ଭ ସୁଖ ପାଇଁ କର ହେ ଶ୍ରମ,

ତୁମ୍ଭ ହାତ ଯଶେ          ତୁମ୍ଭର ସୁଯଶ
ଗାଉ ହେ ଜଗତ ତୁମ୍ଭର ନାମ !
ଦୃଢ଼ କର୍ମବଳ          କର ହେ ସମ୍ବଳ
କର ଅସ୍ତ୍ର ରକ୍ଷା ହୁଏ ହେ ବୀର,
ତୁମ୍ଭି ~~ଧୂଳ~~ ତଳେ ବସି          ନଭୋଗିବେ ଆଉ
ଅଳସ ବକ୍ଷକେ ଧନ ତୁମ୍ଭର ।
ପଶିଛ କିପାଇଁ          କୁଟୀରର କୋଣେ
ଆନ ତବ ଦ୍ରବ୍ୟେ ବିଳାସେ ଭାସେ,
ଦାସ୍ୟର ଶୃଙ୍ଖଳ          ପିନ୍ଧିଛ ହେ ହାତେ
ଅଳଙ୍କାର ପରି ଦିଶଉଛି ସେ ?
ହେଉ ଯାହା ହେବ          ଦେଖାଯିବ ପଛେ
ସେହି ଯନ୍ତ୍ର ସେହି ଲଙ୍ଗଳ ଧର,
ସେହି ଦାଆ କୋଡ଼ି          ଦୃଢ଼େ ଧର ହାତେ
କର୍ମେ ପଶ କରୁ ପରାଣେ ଦୃଢ଼ ।
ସେ କରମେ ତବ          କୀରତ୍ତି ମନ୍ଦିର
ଉଠିବ ଲଇଁବେ ବକ୍ଷକେ ଚହିଁ,
ନହେଲେ ଶ୍ମଶାନ          ହେବ ଜନ୍ମଭୂମି
କରମେ ବିମୁଖ ନହୁଅ ଭାଇ ।



# ସୂକ୍ତିମାଳା *

୧

ଯୌବନ, ସୌନ୍ଦର୍ଯ୍ୟ ଆଉ ଐଶ୍ୱର୍ଯ୍ୟ ତ୍ରୟ,
ପ୍ରତ୍ୟେକେ ମାନବ ମନ କରନ୍ତି ଅଥୟ ।
ଏକାଧାରେ ଏ ତିନିଙ୍କ ଯହିଁ ସମାବେଶ,
ନ୍ୟାୟ ଧର୍ମଙ୍କର ତହିଁ ନିଷିଦ୍ଧ ପ୍ରବେଶ ।

୨

ଛୁଇଁଲେ ଚୂଡ଼ାନ୍ତ ସୀମା ସକଳ ଉନ୍ନତି,
କ୍ରମେ କ୍ରମେ ଘଟେ ଆସି ପୁଣି ଅଧୋଗତି;
ପୂର୍ଣ୍ଣିମା ଲଭିଲେ କ୍ଷୟ ହୁଏ ସୁଧାଧାର,
ଭଙ୍ଗା ପଡ଼ିଯାଏ ପୂର୍ଣ୍ଣ ହୋଇଲେ ନୂଆର ।

୩

ଅଳ୍ପ ଦୁଃଖେ ସଂକ୍ଷୋଭିତ ସଂକୀର୍ଣ୍ଣ ହୃଦୟ,
ଅଳ୍ପ ତାପେ ଶୁଷ୍କ ଯାହା କ୍ଷୁଦ୍ର ଜଳାଶୟ;
ମହା ଦୁଃଖେ ମହାମନା ନହୁଏ ଅଧୀର,
ମହାତାପେ ଶୁଖଇ କି ଜଳ ଜଳଧିର ?

୪

ଭ୍ରମେ ଅବା କୁସଂସ୍କାରେ ଯାହା ଉପାଦେୟ
ତେଜନ୍ତି ତାହାକୁ ଲୋକେ ମଣି ଅତି ହେୟ ।
ଅନ୍ଧ ଗଳେ ଲମ୍ବାଇଲେ ଯଥା ପୁଷ୍ପମାଳ,
ସଭୟେ ନିକ୍ଷେପେ ତଳେ ମଣି ତାକୁ ବ୍ୟାଳ ।

* ଅଧିକାଂଶ ଶ୍ଳୋକ ସଂସ୍କୃତରୁ ଅନୂଦିତ

୫

କାହାରି ଅନ୍ୱେଷଣ ନକରେ ରତନ
ବରଞ୍ଚ କରନ୍ତି ସର୍ବେ ତାଙ୍କୁ ଅନ୍ୱେଷଣ ॥
ଗୁଣର ଆଦର ଲୋକେ ନାହିଁ ଗୁଣୀ ନର,
ବଳେ ବଳେ ଗୁଣ ତାଙ୍କୁ କରେ ସମାଦର ॥

୬

ବୃକ୍ଷର ସ୍ୱଭାବ, ଫଳେ ଲଭେ ସେ ନମନ,
ନଇଁ ଆସେ ଊର୍ଦ୍ଧ୍ୱାକାଶୁଁ ବାରିଗର୍ଭ ଘନ;
ଏସନ ସ୍ୱଭାବ ସିନା ପରୋପକାରୀର,
ବିପୁଳ ଐଶ୍ୱର୍ଯ୍ୟ ଲଭେ ନୁହେ ଉର୍ଦ୍ଧ୍ୱଶିର ।

୭

ବିବିଧ ସଦ୍‌ଗୁଣେ ହେଲେ ମାନବ ସୁଦକ୍ଷ,
ଏକମାତ୍ର ଦୋଷ ତାର ହୁଏ ନାହିଁ ଲକ୍ଷ,
ଯେସନ ଉଜ୍ଜ୍ୱଳ ସ୍ନିଗ୍ଧ ଚନ୍ଦ୍ର କିରଣାଳେ
ଚନ୍ଦ୍ରର କଳଙ୍କ ମଗ୍ନ ହୋଇଯାଏ ଭାଳେ ।

୮

ଥିଲେହେଁ ପ୍ରବଳ ସାହା, ଶତ୍ରୁର ସହିତ
ବିବାଦେ ପ୍ରବୃତ୍ତ ହେବା ନୁହଇ ଉଚିତ,
ଅନଳର ଚିର ସାହା ରୁଦ୍ର ପ୍ରଭଞ୍ଜନ,
ତଥାପି ସେ ଜଳ ପାଶେ ନକରେ ଗମନ ॥

୯

ପ୍ରକୃତ ଐଶ୍ୱର୍ଯ୍ୟଶାଳୀ ହେଲେ ମହାଜନ,
ଅପଥେ କରନ୍ତି ନାହିଁ କେବେ ପଦାର୍ପଣ ।
ଜୁଆରେ ସାଗର ଜଳ ଲଭଲେ ବର୍ଦ୍ଧନ,
କେବଳ ସେ ନଦୀ ମୁଖେ କରଇ ଗମନ ॥

୧୦

ହେଲେ ସୁଦ୍ଧା ନଷ୍ଟଙ୍କ ସକଳ ପ୍ରକାର,
ଜନାପବାଦରୁ କେବେ ନମିଳେ ନିସ୍ତାର;
ପୃଥିବୀ ଛାୟାକୁ ଲୋକ କଳଙ୍କ ଗହୃତ—
ଚନ୍ଦ୍ରର କଳଙ୍କ ରୂପେ କରେ ଅରୋପିତ ॥

୧୧

ସମକକ୍ଷେ ହୋଇଥିଲେ ଶତ୍ରୁକୁ ଧର୍ଷଣ
ନକରନ୍ତି ବୀରଧର୍ମୀ ମହାବୀରଗଣ ॥
ମହାସର୍ପସଂହାରକ ବଳୀ ପନ୍ନଗାଶ
କରେ କି ଡୁଣ୍ଡୁଭ ପ୍ରତି ବିକ୍ରମ ପ୍ରକାଶ !

୧୨

ଆଘାତ କଠୋର ଦଣ୍ଡ ମହାଜନଙ୍କର,
କିନ୍ତୁ ପରିଣାମେ ତାହା ହୁଏ ଶୁଭକର ॥
ଊଷର ଭୂଖଣ୍ଡେ ଅଗ୍ନି କରି ସଂଦହନ
କରେ ତାର ଉର୍ବରତା ଅନ୍ତମେ ବର୍ଦ୍ଧନ

୧୩

ହୀନକୁଳେ ଜନ୍ମି ଯେହୁ ଲଭେ ରାଜପାଦ,
ମୂର୍ଖପୁତ୍ର ପାଏ ଯଦି ପଣ୍ଡିତ ଉପାଧି,
ଭିକ୍ଷୁକ ଯଦ୍ୟପି ଦୈବେ ହୁଏ ଧନବାନ,
ଜଗତକୁ କରନ୍ତି ସେ ତୃଣବତ ଜ୍ଞାନ ।

୧୪

କେବଳ ମାତ୍ରରେ କମ୍ବା ଶୌର୍ଯ୍ୟରେ ପ୍ରକୃଷ୍ଟ,
ପାରେ ନାହିଁ ଜୟ କରି ସୁଖ୍ୟାତ ପୌରୁଷ;
ଅଟଇ କେବଳ ମାତ୍ର ଭୀରୁତା ଲକ୍ଷଣ,
କେବଳ କ୍ରୂରତା ହିଂସ୍ରଜନ୍ତୁ ଆଚରଣ ।



## ପୂଜା ପଦ୍ଧତି

ହରି, ହରି, କେହୁ ଡାକୁଛି ସତତ
ପ୍ରଭୁ ପ୍ରଭୁ କେହୁ କହେ
ତୁମ ନାମ ମୁଖେ ନନେଇ କେହିବା
ତୁମ ଲାଗି ଦୁଃଖ ସହେ ।
କାଠ ପାଷାଣରେ କେ ଦେଖେ ମୂରତି,
ମାନବରୂପେ ବା କେ କରେ ପୀରତି,
ଜନନୀ ଭାବଣ କେ କରୁଛି ନତି,
ପିତୃଭାବ କେହୁ ବହେ ।

ନାନା ପରକାରେ ଭକତ-ଅନ୍ତରେ
ତୁମ ରୂପ ଜ୍ୟୋତି ଉଜ୍ଜ୍ୱଳେ ପ୍ରେମରେ,
ଅଲେଖେ, ଅକାରେ, ଭୂଷାରେ, ବେଶାରେ,
ତୁମ ରୂପରାଶି ଶୋଭେ ।
ଧାନ, ଦୂବ, ଫୁଲ, ଚନ୍ଦନ, ତୁଳସୀ,
କେ ସଜାଡ଼େ ତୁମ ପୂଜାଡ଼ାଲା ବସି,
କେହୁ କାନ୍ଦି କାନ୍ଦି, କେହୁ ହସି ହସି,
ପୂଜେ ପାଦ-ସରୋରୁହେ ।
ଆକାର କଳ୍ପି କେ ତୁମ ରୂପ ଦେଖେ,
ସାରା ସଂସାରେ କେ ତୁମକୁ ନିରେଖେ,
କେବା ତୁମ ରୂପ ହୃଦପଟେ ଲେଖେ,
କେ ବା ଶାଳଗ୍ରାମ ବନ୍ଦେ ।
ତୁମ ବାଣୀ କେହୁ ଶୁଣେ ଜଗତରେ,
କେହୁ ଅବା ଶୁଣେ ଆନ କଣ୍ଠ-ସ୍ୱରେ,
କେ ବା ଶୁଣେ ନିଜ ଅନ୍ତରେ-ଅନ୍ତରେ,
ଯହିଁ ଶୁଣେ ମନ ମୋହେ ।
ତୁମ ଲାଗି କେହୁ କାନ୍ଦେ ନିଶି ଦିନ,
ଲୋଚନ-ଯୁଗଳ-ଜ୍ୟୋତି କରେ କ୍ଷୀଣ,
ଆନନ୍ଦ-ସଲିଳେ କାହା ମନୋମୀନ,
ତୁମ ଲାଗି ବୁଡ଼ି ରହେ ।
ତୁମ ଲାଗି କେହୁ ଆଚରେ ସନ୍ନ୍ୟାସ,
ଛାଡ଼ି ଦାରା-ପରିବାର-ଗୃହ-ବାସ,
ତୁମ ଧର୍ମ ପୁଣି କେ କରେ ପ୍ରକାଶ,
ଆଚରଣେ ରହି ଗୃହେ ।

ତୁମ ଲାଗି କେହୁ ଦଏ ଜଳାଞ୍ଜଳି,
ସର୍ବସ୍ୱଖେ ତାର ଆତ୍ମା ଦେଇ ବଳି,
ଭ୍ରମି ଦେଶ ଦେଶ ଗିରି ବନାବଳୀ,
ତୁମ ନାମ ଧର୍ମ କହେ ।
କୃଷ୍ଣ କହି କେହୁ କରେ ଆରାଧନା,
ଖ୍ରୀଷ୍ଟ କହି କେହୁ କରୁଛି ବନ୍ଦନା,
ସବୁ ତ ଅର୍ଚ୍ଚନା, ସବୁ ତ ସାଧନା,
ସବୁ ସତ୍ୟ ମିଥ୍ୟା ନୁହେ ।
ତୁମେ ମହାପ୍ରଭୁ ଜାଣିଛୁ ଅନ୍ତରେ,
ତୁମେ ଚରାଚରେ ମୋ ଆତ୍ମା ଭିତରେ,
ଲକ୍ଷ୍ୟ ରଖି ମନ ତୁମର ପଦ୍ମରେ,
ସତ୍ୟ ପଥେ ଆତ୍ମା ରହେ ।



## ସ୍ତୁତିବାଣୀ

୧

ଭରସା ରଖିଲେ ବିଭୋ ! ପଦ୍ମରେ ତୋହର,
ଭାଗ୍ୟବନ୍ତ ହୁଅନ୍ତି ତୋ ଭକତନିକର ।
ପଥ ପ୍ରଦର୍ଶୀଏ ତାଙ୍କ, ତୋ ଅନନ୍ତ ଜ୍ଞାନ,
ସହାୟ ତାଙ୍କର ତୁହି ସର୍ବ ଶକ୍ତିମାନ ।

୨

କେତେ କେତେ ଦେଶେ ମୁହିଁ କେଡ଼େ ଦୂରସ୍ଥଳେ
ଜଭ୍ରମିଲି, ଅହା ! କେବ ତୋ କରୁଣାବଳେ
ଚପଳ ପ୍ରଦେଶ କେତେ ଅକ୍ଳେଶେ ଲଙ୍ଘିଲି,
ଦିନେ ହେଲେ କଷ୍ଟମୟ ବାୟୁ ନସେବିଲି ।

୩

ତୋହର-ଦୟା-ବଳେ ଶ୍ରମ ହୋଇଲା ମଧୁର,
ସବୁଠାରେ ଲଭିଲଇଁ ସନ୍ତୋଷ ପ୍ରଚୁର;
ଦୃଷ୍ଟହେଲା "ଅଲ୍ପଗିର" (୧) ତୁଷାର-ଧବଳ,
ଉନ୍ମାଦ "ଷ୍ଟରେନ୍" (୨) ବକ୍ଷ ହେଲା ସମତଳ ।

୪

ନାସ୍ତିଲେ ବଦ୍ଧର ଭଲ, ସ୍ତୁଷ୍ଟପଥେ ମନ !
ଦେଖିଲୁ କେମନ୍ତ ହୋଇ ଉଦର ନୟନ,
ଅପାର ବାରିଧି ମଧ୍ୟେ ଗ୍ରାସିବାକୁ ପୋତ
ଭୀଷଣ ଗରବେ ଉର୍ମି ଉଠିଲେ ଯାବତ !

୫

ବଦନେ ବଦନେ ତ୍ରାସ କଲା ବିତରଣ,
ଭୟେ ହେଲା ସମସ୍ତଙ୍କ ମନ ଛନ ଛନ;
ଯନ୍ତୁଁ ସ୍ତରେ ସ୍ତରେ ଖସି ଉର୍ମିକା ଉତ୍ତାଳ,
ହେଲେ କଲା କର୍ଣ୍ଣଧାର କୌଶଳ ବିଫଳ ।

---

[୧] ୟୁରୋପୀୟ ଉଚ୍ଚ ପର୍ବତବିଶେଷ ।
[୨] ଇଟାଲି ମଧ୍ୟବର୍ତ୍ତୀ ଭୂମଧ୍ୟସାଗରର ଅଂଶବିଶେଷ ।

୬

ଯୋଟିଥିଲା ଯେତେ ଶୋକ ମୋ ହୃଦ ଗଗନ
ସବୁ ହେଲା ଦେବ ! ତୋର କୃପାରୁ ଖଣ୍ଡନ;
ଆରତେ ଡାକିଲେ ଦୁଃଖ ଫେଡ଼ିଥାଅ ତଭ ।
ଶରଣ ପଶିଲି ତେଣୁ ମତି ଦୃଢ଼ କର ।

୭

ଭଷମ ଆବର୍ତ୍ତେ ପଡ଼ି ତରଣୀ ତାତରେ
ଥର ହୁଲୁଥାଏ ଯେବେ ତରଙ୍ଗ ଚୂଡ଼ାରେ,
ଜାଣିଥିଲି ସଦା ତୋହ ଶ୍ରବଣ ମୃତତ
ଦୁଃଖ ହରିବାକୁ ତେବେ ନୋହୁ ଅଶକତ ।

୮

ନଇଁଲି ଝଂଟିକା ବେଗ ତୋର ଇଚ୍ଛା ବଳେ,
ପ୍ରଭଞ୍ଜନ ଆଦି ସର୍ବେ ଯେଘଲେ ବିଫଳେ,
ତୋହ ଆଜ୍ଞା ଯେନ ଆଦ୍ୟେ ଉର୍ମି ନାଚୁଥିଲେ,
ସେହି ଆଜ୍ଞା ମାନି ପୁଣି ସ୍ଥିର ସେ ହୋଇଲେ ।

୯

ବପତ୍ତି ପଡ଼ିଲେ ଅବା ମରଣେ ତାତର
ନହୋଇ ଗାଇବି ଦେବ ମହିମା ତୋହର ।
ଏହି କୃପା ଥାଉ ସଦା ଅବିଚଳ ପ୍ରତି,
କୃତଜ୍ଞ ହୋଇଣ ପ୍ରଭୁ ! କରେଁ ଏ ମିନତି ।



# ବାକ୍ୟବୀର ଓ କର୍ମବୀର



ଭେକ ଗରଜିଲେ ଆସଇ ବରଷା
ଜଳଧାରେ ମହୀ ଭରେ ପ୍ଲାବନ,
ବାକ୍ୟବୀର ଡ଼ାକ କରଇ ଭରସା
କର୍ମବୀର ଥିବ ବୋଲି ଜୀବନ ।

ମରୁଦେଶେ ଭେକ ଗରଜଇ ନାହିଁ
ନୀରଦ ସେ ଦେଶେ ନଦଏ ନୀର,
କର୍ମବୀର କର୍ମ— କ୍ଷୁଣ୍ଣତା ନସହି
ନତ୍ରାକାନ୍ତ କେବେ ବଚନବୀର ।

ଦେଖିଲେ ବିଦ୍ୟୁଲ୍ଲେଖା ଗର୍ଜନ ଶ୍ରବଣ
ଜଣାଯାଏ ମେଘ ବର୍ଷିବ ଜଳ,
ତେଜସ୍ୱିନୀ ଲେଖା ସୁତୀବ୍ର ଶ୍ରବଣ
କର୍ମବୀରଠାରେ ନୁହେ କୁଶଳ ।

କୋକିଳ ଭାଷିଲେ ରସାଳ ଯାଚଇ
ଭୁଞ୍ଜନ୍ତି ତା ସ୍ୱନେ ଜଗତଜନ,
ବାକ୍ୟେ କର୍ମବୀର ଶକ୍ତି ସଂସରଇ
ତେବେ କରେ ଲୋକହିତ ସାଧନ ।

ବାକ ଡ଼ାକ ଶୁଣି ଉଠନ୍ତୁ ମାନବ
କର୍ମେ ରତ ହୁଏ ତେଜି ପଲଙ୍କ,
ତଣ୍ଡ ଶୋଷି ଡାକ ଲାଗିଲେହେଁ ଶବ
ଫିଟାଇ ପାରଇ ନାହିଁ ପଲକ !

ହୃଦ୍‌ଭେଦକ ଶୋକ          ଦୁଏ ଉପଦେଶ
ଧନପଣ ତହିଁ ଦୁଅନ୍ତ ଶୂଳ,
ନଥାଏ ପୁରୁଷ —          ତାର ଯେଉଁ ଦେଶେ
ସହୁ ନେଇଥାଏ ସହସ୍ର ଗାଳି ।



## "କି ଥିଲା ଏ ରାଜ୍ୟ କି ହୋଇଛି ଆଜ" ❋

ଉତ୍କଳର ପୂର୍ବକୀର୍ତ୍ତି-ସ୍ମୃତି-ପୂତ
ବାରବାଟୀ ଅଜ ସ୍ଥାନେ ସଙ୍କୀଭୂତ,
ଐତିହାସିକ ଏ ଦୁର୍ଗ ବାରବାଟୀ,
ବୀର-ରକ୍ତ-ପିଣ୍ଡେ ଗଢ଼ା ଯାର ମାଟି,
ବାରବାଟୀ ଯହିଁ ମନ ସ୍ମୃତି-ପୋତେ
ବହିଯାଏ ପ୍ରତି ଶୋକେ କାଳସ୍ରୋତେ,
ଭାଳେ ତାଳେ କେତେ ଦେଖି ଯେ ଥିଲା
ଜଣକ ନରର ଗାରିମାର ଲୀଳା !
ପୁଣି ନୂଆ ଲୀଳା ଲାଗିଛି ଏଠାରେ,
ପୁଣି ମତ୍ତ ନରେ ଜଣର ବ୍ୟାପାରେ,
ପୁଣି ଦେଖି ଅଛ ଗାରିମାର ଘଣ୍ଟା,
ଲୁଚି ବସି କାଳ କରେ ଯା'କୁ ଥଟ୍ଟା,

❋ ରାଧାନାଥଗ୍ରନ୍ଥାବଳୀର 'ଦରବାର'ରୁ ଉଦ୍ଧୃତ

ଦେଖିବାକୁ ଏହି ସ୍ୱଜସ ଉତ୍ସବ
ରୁଣ୍ଡ ଦୁର୍ଗାଙ୍ଗଣେ ଅସଂଖ୍ୟ ମାନବ,
ଢାଞ୍ଚି ଅରଯାନେ ଯେ ଦୁର୍ଗ ପ୍ରାଚୀର
ବାଦ୍ୟନାଦେ ଦେଇଥିଲା ପ୍ରତିଗିର୍,
ଜରାଜୀର୍ଣ୍ଣ ବେଶେ ଦେଖଇ ସେ ଅଜ
ନବ୍ୟ ଉତ୍କଳର ଏ ସଭ୍ୟସମାଜ,
ପୂର୍ବ ନରପତି—ପ୍ରେତ-ଆତ୍ମାମାନ
ବ୍ୟୋମେ ବ୍ୟୋମଯାନେ କୋଇ ଅଧିଷ୍ଠାନ
ଦେଖନ୍ତି ସଖେଦେ ତାଙ୍କର ଦୁର୍ଗସ୍ଥ
ଉତ୍କଳର ଏହି ଦଶା ବିପର୍ଯ୍ୟସ୍ତ,
ଏହି ଶିଳାବନ୍ଧ ଯା'ଙ୍କର କୀର୍ତ୍ତି,
ପୁଣ୍ୟଶ୍ଳୋକ ମରକତ ମହୀପତି,
ଦେଖି ନାହାନ୍ତି କି ମନେ ବହି ଲାଜ,
କି ଥିଲା ଏ ରାଜ୍ୟ, କି ହୋଇଛି ଆଜ !

## ପରହିତେ

ପରହିତେ ପୟୋଧର ବରଷଇ ଜଳ,
ପରହିତେ ତରୁଗଣ ଧରୁଛନ୍ତି ଫଳ ।
ପରହିତେ ନଦୀ କରେ ଜୀବନ ପ୍ରଦାନ,
କାଷ୍ଠ ଦଗ୍ଧ ହୋଇ କରେ ପରେ ଅନ୍ନଦାନ ।

ପର ପାଇଁ ଦିନକର ହେମ ରଶ୍ମି ଜାଲ;
ପରପାଇଁ ନିଶାମଣି ଜ୍ୟୋତ୍ସ୍ନା ଶୀତଳ
ନିଜ ରୂପେ ସୃଷ୍ଟି କରେ ଅପରେ ଶୋଭିତ,
ବଂଶୀ ମଧୁସ୍ୱନେ ପର ପରାଣ ମୋହିତ ।
ସୃଷ୍ଟିହୁଏ ଏ ସଂସାର ସକଳ ସର୍ଜନ,
ଜଗତ-ମଙ୍ଗଳ ପାଇଁ ସାଧୁର ଜୀବନ ।
ନିଜ ହିତ ପାଇଁ ଯେବେ ଜାତ ନୁହେ ହିନ୍ଦୁ,
ବଳ ହୁଏ ଭାଳେ ହିନ୍ଦୁ, ପ୍ରଭ ରକ୍ତବିନ୍ଦୁ ।

## ମୋ ଜନ୍ମଭୂମି

[ ରାଗ ଶ୍ରେଣୀ ]

ଯେ ଦେଶେ ଜନମ ମୋର    ଯେ ଦେଶେ ମୋହର ଘର
ବହଇ ଯା'ର ସମୀର ଶ୍ୱାସେ ପ୍ରଶ୍ୱାସେ;
ଯେଉଁ ଦେଶର ତପନ    କରଇ ଆଲୋକ ଦାନ
କରୁଛୁ ପ୍ରାଣ ଧାରଣ ଯା' ଫଳ ଶସ୍ୟେ;
ସଦା ପୁଣ୍ୟମୟୀ ଏ ସ୍ଥାନ
ମୋ ଜନମଭୂମି ମୋର ମାତୃ ସମାନ । ୧ ।
ଯେ ଦେଶେ ଅଛନ୍ତି ମୋର    ପ୍ରିୟ ବନ୍ଧୁ, ପରିବାର
ସ୍ନେହମୟୀ ମାତା, ମୋର ସ୍ନେହର ଭାତ,
ପ୍ରେମ-ଆନନ୍ଦ-ପସରା    ସହୋଦର, ସହୋଦରା
ବୁହାଇ ସେନେହ-ଧାରା ହରନ୍ତି ଚିତ୍ତ;
ନାହିଁ ଆଉ ଏସନ ସ୍ଥାନ,
ମୋ ଜନମଭୂମି ରାଜେ ମାତୃ ସମାନ । ୨ ।

ଯେ ଦେଶର ନଦୀ ତିର    ଜୀବଜନ୍ତୁ-ଉପକାରୀ
ଶୁଭ୍ର କଳେବର ଧରି ଶୋଭା ବଢାଏ;
ଅତୁଳ ତାରକା-ଶୋଭା    ନବ-ଜଳଧର ଅଭ୍ର
ଚପଳା ଚପଳା-ଭଙ୍ଗୀ ଖେଳେ ଆକାଶେ
କାହିଁ ଥାଉ ସ୍ଥାନ ଏମନ ?
ମୋ ଜନ୍ମଭୂମି ସତେ ସ୍ୱର୍ଗ ସମାନ । ୩ ।

ଯେଉଁ ଦେଶର ଆକରେ    ବହୁ ମଣି ବାସକରେ
ମିଳେ ମୁକୁତା ସାଗରେ ମୋ ହିତ ପାଇଁ;
ଯେଉଁ ଦେଶର କାନନ    ତରୁ, ଲତା, ପୁଷ୍ପମାନ
ସୁମଧୁର ପକ୍ଷି-ଗାନ ମନ ମୋହଇ;
ଅଦ୍ୱିତୀୟ କରେ ଏ ସ୍ଥାନ;
ମୋ ଜନମଭୂମି ଆହା ବୈକୁଣ୍ଠ ଧାମ । ୪ ।

ଯେ ଦେଶର ଜଳେ, ଫଳେ    ପୁଷ୍ଟ ମୁଁ ଏ ଧରାତଳେ
ଯା’ ନାମେ ମୁଁ ପରିଚିତ ହୁଏ ଜଗତରେ;
ଯାର ଗଉରବେ ସତେ    ମାତି ଉଠେ ମୁଖ ଚିତ୍ତେ
ଯାର ଅପମାନ ଯୋଗେ ଦଗ୍ଧେ ମାରେ;
ଜଗତେ ଅତୁଳ ଏ ସ୍ଥାନ;
ମୋ ଜନମଭୂମି ସିନା ସ୍ୱର୍ଗ ସମାନ । ୫ ।



# ଚିତ୍ରକୂଟରେ ରାମ ଓ ସୀତା *

( ରାଗ—ମାଳବ )

ରଘୁସାଇଁ ସୁଖେ ରହି ଚିତ୍ରକୂଟ ଚୂଳେ,
ନିତି ନିତି ବିହରନ୍ତି ବଇଦେହୀ ମେଳେ ।
କେତେବେଳେ କୁତୂହଳେ ବନେ ବନେ ମାତି,
କୁସୁମରେ ମଧୁକରେ ଭ୍ରମିବା ଦେଖନ୍ତି ।
ଜାଇ ମଲ୍ଲି ଚମ୍ପା ତୋଳି ସଜାଡ଼ନ୍ତି ଗଭା,
ପ୍ରିୟ ସଖୀ କବରୀର କରୁଥାନ୍ତି ଶୋଭା ।
କେତେବେଳେ ଲତାତଳେ ଯତନେ ଲୁଚନ୍ତି,
ପ୍ରେମଭରେ ହସି ଧୀରେ ଜାନକୀ ଖୋଜନ୍ତି ।
କେତେବେଳେ ସେ ଲୁଚିଲେ ଖୋଜନ୍ତି ରାଘବ,
ଅପୂରୁବ ତାଙ୍କ ଭାବ କେ କହି ପାରିବ ।
ହସି ଖେଳି ଫୁଲଧୂଳି ଦେଇ ବୋଳି ଦୁହେଁ,
ଅଙ୍ଗମାନ ଶ୍ରୀଚନ୍ଦନ ସୁଲେପନ ପ୍ରାୟେ ।
କେତେବେଳେ ଯାଇ ବନେ ମଣିଶିଳେ ବସି,
ବେନି ଜନେ ତନମନେ ପଶାଖେଳେ ରସି ।
କେତେବେଳେ ପ୍ରେମଭୋଳେ କରି ଆଲିଙ୍ଗନ,
ହେଦେ କହି ଧନ ମୁହିଁ ପିଣ୍ଡ ତୁ ଜୀବନ ।
ବୁଲି ବୁଲି ବନେ ଖେଳି ବହନ ଆସିଲେ,
ଫଟିକର ଶିଳେ ଶରଧାରେ ସେ ବସିଲେ ।

---

* "କେଶବ ରାମାୟଣ"ରୁ ଉଦ୍ଧୃତ ।

ଗେହୁ ଯୋଉ ଗୃପଧାସ୍ ଦେଲେ ପ୍ରିୟା ଭଲେ,
ବଫେଉପ୍ରେ ନାସଉସ୍ରେ କାନ୍ତକ୍ଷୁ ଯୋଝାଲେ ।
ଲଗି ପୀଡା ଭଲ ଚଡ଼ା ଦଣେ ସ୍ୱମଦେହେ,
କରଡାଳ ମାଉ ବାଙ୍ଗୀ ଦସନ୍ତ୍ର ଅଥଯ୍ଯେ ।
ଚୂଡବୃଷ ଶିଖେ ପିକ ଉଚ୍ଛେ ଡ୍ରାକ ଦେଲେ,
ବେଜ ପ୍ରାଣୀ କାହା ଶୁଣି ଶୃଦାନ୍ତ ଯେ ମୂଳେ ।
ରଜନୀରେ ପ୍ରମୋଦରେ ଚନ୍ଦ୍ର ଉଦେ ଜାଣି,
ବରନାସ୍ କର ଧରି କରନ୍ତ ଭ୍ରମଣି ।
ଫୁଲ ଫଳ ତରୁଡ଼ାଲେ ଲୂଚ ବେଗେ ଅସି,
ବୋଲ କର ତାଙ୍କୁ ଧର ଅନନ୍ଦ ସ୍ୱକେଶୀ ।
ଗିର ଡେଜେ ରଜନୀ ଯେ ଦବସ ପସ୍ୱଏ,
କେଶବ ବୋଲେ ଉସ୍ୱବ କହ ଡ କନ୍ଥଏ ।

## ସାନ୍ଧ୍ୟ ଶୋଭା *

( ସ୍ୱଗ—ସ୍ୱମକେଶ୍ )

ବଡ଼ଶ୍ୱି ଶିଖରେ ପଡ଼ଲ
ରକ୍ତ କନକ ବର
ଅସ୍ତ-ଗିରି-ଚୂଡ଼ା ଛୁଇଁଲେ
ଯେବେ ଦବସକର

* "ପଦ୍ମମଳା"ର ୩ ୟ ସର୍ଗରୁ ଉଦ୍ଧୃତ ।

ଅସ୍ତୋନ୍ମୁଖ ରବି ସିନ୍ଦୂର
　　　　ଶୋଭେ ବାରୁଣୀ ଶିରେ
ଭାସିଯାଏ ପ୍ରାଚୀ-ସୁନ୍ଦରୀ
　　　　ଦୁଃଖ-ବାଷ୍ପ-ନୀରେ ।
ବାରୁଣୀ-ଋଣୀ କି ଦେଖୁଛ
　　　　ବଳେ ମଥା ସିନ୍ଦୂର
ତେଣୁ ପ୍ରାଚୀ-ସପତ୍ନୀ କି
　　　　ବାରିଦରେ ବିଧୁର ।
ସେ ସିନ୍ଦୂର ଚନ୍ଦ୍ର ମସ୍ତକେ
　　　　କରିବାକୁ ଧାରଣ
ତାର-ସେନା ଶଶୀ-ସେନାନୀ
　　　　ଧରି କରିବ ରଣ ?
ଝିଁ-କୁଳ ସ୍ଥଳରେ କରନ୍ତେ
　　　　ରଣଭେରୀ ବାଦନ
ତାହିଁ ଗଲା ଭାନୁ ଘଣକେ
　　　　ଶୂନ୍ୟ ଦେଖିଲା ଗଗନ ।
ପ୍ରଭାକର ସ୍ୱର୍ଣ୍ଣଗୋଲକ
　　　　ଜାଣି ପ୍ରକୃତି ରାଣୀ
ସାନ୍ଧ୍ୟ-ଘନ-ବହ୍ନି-ପାତ୍ରରେ
　　　　ତାକୁ ଅଉଟିଲାଣି ।
ଅପୂର୍ବ ପାରଦ ମିଶାଇ
　　　　ତହିଁ ତାରକା ଶଶୀ
ଗଢ଼ିଦେବ କବା ଗଗନେ
　　　　ଉଠିଲାଣି ସେ ହସି ।

ସ୍ୱାମୀ ଦୁରବସ୍ଥା ଦର୍ଶନେ
ସତୀ ପଦ୍ମିନୀ ନୀରେ
ବାଳେ ଛିନ୍ନ ଶିର କଣ୍ଠ
ଦେଖି ଜଳ ମଧ୍ୟରେ ।
ମହୋଦଧି ବକ୍ଷେ ପତିତ
ଚନ୍ଦ୍ରବିମ୍ବ ସୁନ୍ଦର
ବୈକୁଣ୍ଠ ହୃଦେ କି ଶୋଭିତ
କୌସ୍ତୁଭ ମନୋହର ।
ହୋଇଲା ବିଶାଳ ଗଗନ
ନୀରେ ପ୍ରତିଫଳିତ
ତାରା-ମାଳୀ ଶଶୀ-ସହିତ
ହୁଅଇ ଅନୁମିତ ।
ବିଶାଳ ପୟୋଧି ଧରି କି
ତାଙ୍କୁ ଲହରୀ-କରେ
ରଜନୀ-ରାଣୀଙ୍କ ଦିଅଇ
ଉପହାର ସାଦରେ ।
ଅନନ୍ତ ଗଗନ-ସିନ୍ଧୁରେ
ତାରା-ରତନ ଦିଶେ
ତୀର୍ଥୀ ନୌକାଏ ପରାଏ
ଭବା ନବ ଶଶୀ ସେ ।
ଖଣ୍ଡ ମେଘ ଗଣ୍ଡ କି ଅବା
ଦିଶେ ଲହରୀ ପରି
ତହିଁ ବୁଡ଼ିଯାଏ ମଧ୍ୟ କି
ଥିବା ନୌକା ପରି ।



# ଶ୍ରୀ ଚୈତନ୍ୟ ଦେବ

---

ପ୍ରେମ ଅବତାର ଶ୍ରୀଚୈତନ୍ୟ ଦେବ
ଦୃଷ୍ଟି ଚୈତନ୍ୟ ମୂରତି,
କି ଶୁଭ ଯୋଗରେ ଜନନୀ ଜଠରୁ
ଖସିଲ ହେ ବସୁମତୀ ।
କେଡ଼େ ହୃଦ ଲଭ ଅସିଥିଲ ପ୍ରଭୁ
ଧରାବାସି-ହିତ ପାଇଁ,
ଯେତେ ଭାବେଁ ତେତେ ହୁଏ ହତବୁଦ୍ଧି
ହେ ପ୍ରେମମନ୍ତ୍ର-ଗୋସାଇଁ ।
କେତ୍ରୁ ଭକ୍ତ ଦେଖେଁ ଅନନ୍ତ ଅବାଙ୍ଗ
ଅସଂଖ୍ୟ ଗ୍ରହ ଅଲୟ,
କେତେ ଜୀବ ପୋଷି ବରୁଣ ଜଳୟ
ଅନନ୍ତ ନୀଳିମାମୟ ।
ସତ ଏ ସମସ୍ତ ଅନନ୍ତ ଉଦାର
ମାତ୍ର ତବ ହୃଦ ପରି,
କିନ୍ତୁ ନଦେଶଇଁ ବାସ୍ତବ ସଂସାରେ
ତୁମ୍ଭେ ତୁଳନା ତୁମ୍ଭର !
ଜପି ପ୍ରେମମନ୍ତ୍ର ଏ କୌଶଳ ଦେବ
କରିଥିଲ ଚିତ୍ତଶୁଦ୍ଧି,
ତେଣୁ ମହାପ୍ରାଣୁ ଛୁଟି ଯାଇଥିଲା
ନରେ ନର ଭେଦ ବୁଦ୍ଧି ।

ଧରି ପ୍ରେମବାନା ପ୍ରେମ ବଇରଙ୍ଗ
ବାଇ ଖୋଲ କରତାଳ,
ପ୍ରେମର ଉଚ୍ଛ୍ୱାସେ ପ୍ରଜ୍ୱଳିଲ ବଙ୍ଗେ
ସାଧୁ ଧର୍ମ ଏକାକାର ।
ଯହିଁ ଗଲ ତହିଁ ଯେତେ ଭେଦ ଥିଲ
ସବୁ କରିଦେଲ ଦୂରା,
ବାଟେ ହାଟେ ଘାଟେ ବଦଳେ ବାଣ୍ଟିଲ
ସାମ୍ୟ ଧର୍ମ ସାର ସୁଧା ।
ନଗର ଲଙ୍ଘିଣ ପଲ୍ଲୀ ପଥେ ଭ୍ରମି
ପ୍ରେମଧର୍ମୀ ଦଳେ ଦଳେ,
ନୃତ୍ୟଥିଲ ଅଙ୍ଗ ତବ ନାମ ଗୀତ
ଗାଅନ୍ତି ସେ ପ୍ରେମଭରେ ।
ଦିବା ଅବସାନେ କର୍ମକ୍ଷେତ୍ରୁ ଫେରି
ପଲ୍ଲୀ ଗଗନ କମ୍ପାଇ
ମୃଦଙ୍ଗ ନାଦରେ ମାତନ୍ତି ସେ ଅତି
"ନବଦ୍ୱୀପଚନ୍ଦ୍ର" ଗାଇ ।
ଅଛି ସେହି ଗୀତ ସେ ମୃଦଙ୍ଗ ଧ୍ୱନି
ସେହି ଦୂର ସ୍ଥାନମାନ,
କାହିଁ ଅଛି ସେହି ପ୍ରେମପୂର୍ଣ୍ଣ ହୃଦ
ସୁଧାମୟ ସାମ୍ୟଜ୍ଞାନ !
ବାଦ୍ୟ ଅବରଣ ରହିଅଛି ପଡ଼ି
କାହିଁ ସେ ଅନ୍ତର ରସ,
ସଂକୀର୍ତ୍ତନ ସଙ୍ଗେ ସେ ମହାପ୍ରାଣତା
କାହିଁ ନଭରେ ପରଶ !

ଛୋଟା ଗୋପୀନାଥ    ସାଗର ସୈକତେ
ବସି ସାଗରକୁ ଚାହିଁ,
ଭେଟେ ଏହୁ କଥା    ଗ୍ରବନ୍ତ ମନରେ
ତତ୍ତ୍ୱ ତ ପାଇଲ ନାହିଁ ।
ଆସ ଆଉ ଥରେ    ହେ ପ୍ରେମ ସନ୍ନ୍ୟାସି !
ଏ ପାନସ୍ଥାନ ଉତ୍କଳେ,
ସିନ୍ଧୁ ଦଣ୍ଡ ବାରେ    ସେହୁ ସୁଧାରସ
ବସି ସ୍ୱର୍ଣ୍ଣେ ମିଳାଇଲେ ।
ଜାଗି ଉଠୁ ବେଗେ    ଉତ୍କଳପରାଣ
ପାଇ ସେହୁ ପ୍ରେମରସ,
ଜାତି-ମୁକ୍ତି ଲାଗି    ଜନମନ୍ତୁ ଦେଶେ
ଧର୍ମ କର୍ମ ପ୍ରେମ ବୀର ।




ଶ୍ରୀ ଦାମୋଦର ରଥଙ୍କଦ୍ୱାରା ବ୍ରହ୍ମପୁର ଷ୍ଟୋର ପ୍ରେସରେ ମୁଦ୍ରିତ ।

